# ବାଞ୍ଛାନିଧି ଗ୍ରନ୍ଥାବଳୀ

ଲେଖକ :—

୬ ବାଞ୍ଛାନିଧି ମହାନ୍ତି

ପ୍ରକାଶକ :—

ଓଡ଼ିଶା ସାହିତ୍ୟ ଏକାଡେମୀ

ଭୁବନେଶ୍ୱର-୧

ମୂଲ୍ୟ [illegible] ନୂ:ପ:

# ଅଗ୍ରଲେଖ

କବି ବାଞ୍ଛାନିଧି ମହାନ୍ତି ଓଡ଼ିଶାରେ ସୁପରିଚିତ । ଭାରତୀୟ ଜାତୀୟ ଆନ୍ଦୋଳନ ଓ ମୁକ୍ତି ସଂଗ୍ରାମର ଜଣେ ସୁଦକ୍ଷ ସୈନିକ ରୂପେ ସେ ଆମ୍ଭମାନଙ୍କର ଶ୍ରଦ୍ଧା ଓ ସମ୍ମାନର ପାତ୍ର । ଏକ ସମୟରେ, ତାଙ୍କର ଭାବ-ଉଦ୍ଦୀପକ କବିତାବଳୀ ଓଡ଼ିଶାର ଗ୍ରାମାଞ୍ଚଳରେ ମଧ୍ୟ ଜାତୀୟତାର ବନ୍ୟା ଛୁଟାଇ ଦେଇଥିଲା । ଦେଶ ପାଇଁ, ଜାତିର ମୁକ୍ତିପାଇଁ ଦେଶବାସୀଙ୍କୁ ସଜାଗ ରଖିବାକୁ ସେ ନିଜ ସାହିତ୍ୟ ସାଧନାର ଚରମ ଓ ପରମ ଲକ୍ଷ୍ୟ ବୋଲି ଗ୍ରହଣ କରିଥିଲେ । ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ତାଙ୍କର ଜାତୀୟତାବାଦୀ କବିତା ଗୁଡ଼ିକ ସଂକଳିତ ହୋଇ, ବର୍ତ୍ତମାନ ଦେଶର ପରିସ୍ଥିତି ଦୃଷ୍ଟିରୁ, ପ୍ରକାଶ ପାଇବାରେ ଯଥେଷ୍ଟ ଯଥାର୍ଥତା ରହିଛି । ଏହି ଗ୍ରନ୍ଥାବଳୀର ଜନପ୍ରିୟତା ଆମ୍ଭମାନଙ୍କର ଏକାନ୍ତ କାମ୍ୟ ।

**ସନ୍ତୋଷ କୁମାର ସାହୁ**

ତା ୨୨ । ୭ । ୬୩

ସଭାପତି, ଓଡ଼ିଶା ସାହିତ୍ୟ ଏକାଡେମୀ

# ଆଦ୍ୟ କଥନ

ଗଣକବି ସ୍ୱର୍ଗତ ବାଞ୍ଛାନିଧି ମହାନ୍ତି ଖ୍ରୀ. ୧୮୯୭ ଏପ୍ରିଲ ୨୦ ତାରିଖରେ, ବାଲେଶ୍ୱର ଜିଲ୍ଲା ବାସୁଦେବପୁର ଥାନା ଅନ୍ତର୍ଗତ 'ଇରମ' ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଦାରୁଣ ଦୈବ, ତାଙ୍କର ୪୧ ବର୍ଷ ବୟଃକ୍ରମ କାଳରେ ତାଙ୍କୁ ଚିରକାଳ ଲାଗି ସେହି ଶାଶ୍ୱତ ଧାମକୁ ଫେରାଇ ନେଇଥିଲେ । ୧୯୩୮ ଏପ୍ରିଲ ୧୯ ତାରିଖରେ କେବଳ ଯେ ଏହି ଗଣକବିଙ୍କର କର୍ମମୁଖର ଜୀବନର ଅବସାନ ଘଟିଲା, ତାହା ନୁହେଁ, ଜାତୀୟବାଦୀ ଉତ୍କଳ-ସାହିତ୍ୟ ଗଗନରୁ ଏକ ତେଜୀୟାନ୍ ଜ୍ୟୋତିଷ୍କର ମଧ୍ୟ ଅନ୍ତର୍ଦ୍ଧାନ ଘଟିଲା । ଏହି ଗଣକବିଙ୍କର ନାମୋଲ୍ଲେଖ ନହେଲେ ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ ସର୍ବଥା ବିକଳାଙ୍ଗ ହୋଇ ପଡ଼ିବ ।

ସ୍ୱର୍ଗତ କବି ବାଞ୍ଛାନିଧି କେବଳ କବିତା ରଚନା କରି ନଥିଲେ,—ସେ ସ୍ୱ ରଚିତ ଉକ୍ତ ଜାତୀୟବାଦୀ କବିତାଗୁଡ଼ିକୁ ଆବୃତ୍ତି କରି, ଶ୍ରୋତାମାନଙ୍କ ଅନ୍ତରମଧ୍ୟରେ ଆଗ୍ନେୟଗିରିର ଭୀଷଣ ଉଦ୍‌ଗିରଣ ଘଟାଉଥିଲେ । କବି ଯେ କେବଳ କଳ୍ପନା ବିଳାସୀ ନୁହନ୍ତି, ଜାତି ସଂଗଠନରେ କବିଙ୍କର କୃତି ଯେ ଏକ ଶକ୍ତିଶାଳୀ ଅସ୍ତ୍ର, ସମାଜ ପ୍ରତି ସଚେତନତା ଯେ କବିଙ୍କର ବଳିଷ୍ଠ ବ୍ୟକ୍ତିତ୍ୱର ପରିଚାୟକ; ଏହା ଅନ୍ୟ ଅନେକ ବିଶିଷ୍ଟ କବିଙ୍କପରି ସ୍ୱର୍ଗତ ବାଞ୍ଛାନିଧିଙ୍କ କବିତାବଳୀରୁ ମଧ୍ୟ ପ୍ରତିପନ୍ନ ହୁଏ ।

୧୯୩୬ରେ ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା । ତାହା ପୂର୍ବରୁ ଓଡ଼ିଆଭାଷାଭାଷୀମାନେ ବିଭିନ୍ନ ପ୍ରଦେଶରେ ବିକ୍ଷିପ୍ତ ହୋଇ

ରହିଥିଲେ । ସେତେବେଳେ ଜାତୀୟବାଦୀ ଓଡ଼ିଆ ନେତାମାନେ ଓଡ଼ିଶାର ଏକୀକରଣ ପାଇଁ ପ୍ରବଳ ଉଦ୍ୟମ କରୁଥିଲେ । ଓଡ଼ିଆ କବିମାନଙ୍କର ରଚନା, ସେତେବେଳେ ମଧ୍ୟ ଖଣ୍ଡିତ ଓଡ଼ିଆ ପ୍ରାଣରେ ନବଜାଗରଣ ଆଣି ଦେଇଥିଲା । ଗଣକବି ବୈଷ୍ଣବ ପାଣିଙ୍କର ଅନେକ କବିତା ସେତେବେଳେ ଏହି ଲକ୍ଷ୍ୟ ସାଧନରେ ବିଶେଷ ସହାୟକ ହୋଇଥିଲା ।

ବାଞ୍ଛାନିଧି ଏକ ପକ୍ଷରେ ଯେପରି ଉତ୍କଳ-ପ୍ରେମୀ, ଅନ୍ୟ ପକ୍ଷରେ ସେହିପରି ଭାରତ-ପ୍ରେମୀ ମଧ୍ୟ ଥିଲେ । ଉତ୍କଳମଣି ଗୋପବନ୍ଧୁଙ୍କ ପରି ଗଣକବି ବାଞ୍ଛାନିଧି ମଧ୍ୟ ପରମ ଉଦାରତାରେ ଉତ୍କଳ ତଥା ଭାରତର ସମୁନ୍ନତି ଏକତାନରେ କାମନା କରୁଥିଲେ । ୧୯୨୧ ଖ୍ରୀଷ୍ଟାବ୍ଦର ଅସହଯୋଗ ଆନ୍ଦୋଳନ ଠାରୁ ୧୯୩୦ର ଲବଣ-ସତ୍ୟାଗ୍ରହ ଆନ୍ଦୋଳନ ପର୍ଯ୍ୟନ୍ତ ବିଭିନ୍ନ ଜାତୀୟ ପ୍ରତିକ୍ରିୟା ସମ୍ପର୍କରେ ବାଞ୍ଛାନିଧିଙ୍କର ସମସ୍ତ କବିତା, ଓଡ଼ିଆ ଜାତୀୟବାଦୀ ସାହିତ୍ୟର ବିଶିଷ୍ଟ ସମ୍ପଦରୂପେ ଗଣନା କରାଯାଇପାରେ । ସେ ସ୍ୱଭାବତଃ ସଂଗୀତପ୍ରିୟ ଏକ ଥିଏଟର ଦଳର ସଂଗଠକରୂପେ ସେ ଆଜି ପରିଚିତ ନଥିଲେ ମଧ୍ୟ ସେହି ଦଳର ସୃଷ୍ଟି ସଙ୍ଗେ ତାଙ୍କ ବ୍ୟକ୍ତିତ୍ୱର ନିବିଡ଼ ସମ୍ପର୍କ ବିଦ୍ୟମାନ ।

ଓଡ଼ିଶା ସାହିତ୍ୟ ଏକାଡେମୀ ଦେଶର ବର୍ତ୍ତମାନ ଜରୁରୀ ପରିସ୍ଥିତି ସମୟରେ ବାଞ୍ଛାନିଧି-ପଦ୍ୟାବଳୀ ପ୍ରକାଶିତ କରି ସାହିତ୍ୟ ସାଧନାର ଏକ ଯୁଗୋଚିତ କର୍ତ୍ତବ୍ୟ ସମ୍ପାଦନ କରୁଅଛି ମାତ୍ର ।

**ଶ୍ରୀ ଗୌରୀକୁମାର ବ୍ରହ୍ମା**
ସେକ୍ରେଟାରୀ,
ଓଡ଼ିଶା ସାହିତ୍ୟ ଏକାଡେମୀ

# ବାଞ୍ଛାନିଧି ପଦ୍ୟାବଳୀ

ଓଁ ବନ୍ଦେ ମାତରମ୍

( ୧ )

ବନ୍ଦନା

ଜୟ ଜୟ ଜୟ ଭାରତ ଜନନି ! ବନ୍ଦଇ ତୋ ପାଦ କମଳେ
କର ମା କରୁଣା ତୋ ଦୀନ ସନ୍ତାନେ ନେଇ ତାଳ ଗୃହିଁ ଭମକେ ।
। ପଦ ।

ସହୁଲୁଣି କେତେ କେତେ କଷଣ
ସହୁଲୁଣି କେତେ କେତେ ଦୂଷଣ
ଅନ୍ନ ବସ୍ତ୍ର ବିନା ଆକୁଳିତ ପ୍ରାଣ
ଦୁର୍ଭିକ୍ଷ ରାକ୍ଷସ କବଳେ । ୧ ।

ପୁତ୍ରଙ୍କ ଦୁଃଖରେ ହୋଇ ତୁ ଦୁଃଖିନୀ
କାନ୍ଦନା କାନ୍ଦନା ଭାରତ ଜନନୀ
କରଯୋଡ଼ି ସର୍ବେ କରୁଛୁ ଦସ୍ପିମା
ସ୍ୱରାଜ୍ୟ ମାଗୁ ତୋ ସମ୍ମୁଖେ । ୨ ।

ଜାଗିଲେଣି ଏବେ ତୋର ଯୋଗ୍ୟ ସୁତେ
ଲାଗିଲେଣି ତୋର ଉପାସନା ବ୍ରତେ
ଭକ୍ତି ପୁଷ୍ପାଞ୍ଜଳି ଘେନ ଘେନ ଅଳି
ଦାନ୍ତ କରୁଛନ୍ତି ସକଳେ । ୩ ।

( ୬ )

ଜୟ ଜୟ ହିନ୍ଦୁ ମୁସଲମାନ
ଶିଖ ପାର୍ସି ଜୈନ ବୌଦ୍ଧ ଇହୁଦ ଖ୍ରୀଷ୍ଟିୟାନ ।
ନ କର କାହାରି ଭୟ ଗାଅ ଜନ୍ମଭୂମିର ଜୟ
ସ୍ୱାଧୀନତା ବୈଜୟନ୍ତୀ ଉଡ଼ାଅ ଅବକାଶମୟ
ଗର୍ଜି ଉଠୁ ସିଂହନାଦେ ସୁପ୍ତ ହିନ୍ଦୁସ୍ଥାନ । ୧ ।

ଭାରତ ଗଗନ ଭାରତ ପବନ
ଭାରତର ମାଟି ଭାରତର ଜଳ ଅମୂଲ୍ୟ ଧନ
ଗାଅ ଭାଇ ମନ ଐକ୍ୟ ମନେ ଭାରତର ଜୟ ଗାନ ।୨।

ଭାରତ ଗଗନେ ନବୀନ ସୂର୍ଯ୍ୟ ଉଇଁଲଣି ଆସି
ଭାରତ ଯେବେ ସଭିଏଁ ମୁକ୍ତ ସଭିଏଁ କ୍ଷେମାନ । ୩ ।

( ୩ )

ଆଜ ମାତିଲେଣି ଦେଶ ସକଳ
ଏତେକ ବେଳକୁ କାହିଁ ଜଡ଼ ଉତ୍କଳ
ଅମେରିକା ଜରମାନି ସ୍ଥାନେ ଉଠେ ଜୟଧ୍ୱନି
ପୁଣି ଜାପାନ ଅବନୀମଣ୍ଡଳ ଶୀଳ । ୧ ।

ସେ ଦେଶ ଜୀବିକା ଶିକ୍ଷା ଏ ଦେଶ ଜୀବିକା ଭିକ୍ଷା
ଦେଖି କରି ଧନ ନୁହଁ ବିକଳ । ୨ ।

ଉଠ ଉଠ ଉଠ ଭାଇ ମଠ କଲେ ରକ୍ଷା ନାହିଁ
ନିଜ ଦେଶକୁ ଉଠାଇ ପୌରୁଷ ପାଳ । ୩ ।

( ୪ )

ମନ୍ଦେ ମନ୍ଦେ ନବ ଆନନ୍ଦେ ଗାଅରେ ଭାରତ ସ୍ୱାଧୀନଂ
ଗାଅରେ ଭାରତ ସ୍ୱାଧୀନଂ, ଭଜରେ ଭାରତ ସ୍ୱାଧୀନଂ । ୦ ।

ଯେଉଁ ପଞ୍ଜାବର ଆର୍ଯ୍ୟ ତପୋଧନ
ଅହିଂସା ଧରମ କରନ୍ତି ପାଳନ
ସେହି ପଞ୍ଜାବର ଆର୍ଯ୍ୟ ତପୋଧନ
ଅହିଂସା ଧରମ କରନ୍ତି ପାଳନ
ସେହି ପଞ୍ଜାବର ପୁଣ୍ୟ ପଞ୍ଚନଦ ନର ରକ୍ତେ ପ୍ଲାବନଂ । ୧ ।

ଛାଡ଼ିଦିଅ ଭାଇ ସବୁ ବାବୁଗିରି
ଛାଡ଼ ଆଧ ଏବେ ଗୋଲାମ ଚାକିରି
ମୋଟ ଭାତ ଖାଅ ମୋଟ ଲୁଗା ପିନ୍ଧ ଏକା ଈଶ୍ୱର ଶରଣଂ ।୨

ଅଛ ବକୁଳରେ ମାତା ଡାକେ, ପୁଅ !
ଅଣ୍ଟାଭିଡ଼ ଭାଇ ତାକୁ କର ଭୟ
ମାତା ଦୁଃଖେ ଦୁଃଖୀ ମାତା ସୁଖେ ସୁଖୀ
ମାତାର ମରଣେ ମରଣଂ । ୩ ।

( ୫ )

ପଢ଼ୁନାହିଁକି ଛଳେ ମନେ ସୋଦର ହେ
ପୂର୍ବର ମହିମା ପୂର୍ବର ଗରିମା
ଉତ୍କଳ ଅଶ୍ରାନ୍ତ କାହାଣୀ ଶ୍ରବଣେ । ୧ ।

ସାମନ୍ତ ସାହିତ୍ୟକ ଲୀଳାବତୀ ଗାଣିତିକ
ଜ୍ୟୋତିଷ ପ୍ରବର ଶ୍ରୀଚନ୍ଦ୍ରଶେଖର
ଜନ୍ମିଥିଲେ ତବ ଭାଗ୍ୟେ ଏଥୁ ତପନେ । ୨ ।

ଯଯାତି ଚୋଡ଼ଗଙ୍ଗ ପୁରୁଷୋତ୍ତମ ଅନଙ୍ଗ
ମରକତ ଆଦ ବୀର ଚୂଡ଼ାମଣି
ଗାଏ ଯା’ଙ୍କ କୀର୍ତ୍ତି କେତେ ସୁଷମା ସ୍ମୃତି
କାଠଯୋଡ଼ି ବନ୍ଧ ଯା’ଙ୍କ ଯଶଃ ଗନ୍ଧ
ତାଙ୍କ ସୁତେ କହିଁ ଅବସନ୍ନ ମନେ । ୩ ।

( ୭୦ )

ଘବୁନାଙ୍କୁ ଘଇ ମହାତ୍ମା କା'ପାଇଁ,
କାହିଁ ଏତେ ଦୁଃଖ ସହୁଛୁରେ ।
ସହୁ ସହୁ ସେ ତ ପଥର ହେଲଣି,
ଟଳେ ତୋ ଚେତନା ନୋହୁଛୁରେ । ୦ ।

କପାଇଁ ତେଜଣ ଏ ସୁନା ସଂସାର,
ଭୁଛୁକଲେ ଯେତେ ଆସୁ ଅଳଙ୍କାର ।
ଧନ ସଙ୍ଗେ ଦାରା ପୁତ୍ର ପରିବାର,
ସଂନ୍ୟାସେ ଆଶ୍ରମେ ରହୁଛୁରେ । ୧ ।

ଯୁଝି ପାପାସୁର ପ୍ରତାପୀ ପ୍ରଚଣ୍ଡ,
ସାଦରେ ଭୋଗୁଛୁ କାରାଗାର ଦଣ୍ଡ ।
ଜାଣିଶୁଣି କମ୍ପା ହେଉ ତୁ ପାଷାଣ୍ଡ,
କ ମନ୍ତ୍ରେ ତୋ ମନ ମୋହୁଛୁରେ । ୨ ।

କେତେ କେତେ ଶିଷ୍ୟ ଅନୁଚର ପୁଣି,
ଦେଶ-ସେବୀ ସାଧୁ ସନ୍ୟାସୀ ସୁଗୁଣି ।
ପଡ଼ନ୍ତି ଅନଳେ ମାତା ଡାକ ଶୁଣି,
ମାତା ଡାକ ତାଙ୍କୁ ଦହୁଛୁରେ । ୩ ।

ଅପମାନ ଗାଳି ଗୋଇଠା ପ୍ରହାର,
ଭୋଗୁଛନ୍ତି ଦଣ୍ଡ କେ'କେତେ ପ୍ରକାର ।
ଖାଇ ସେ ପ୍ରହାର କରନ୍ତି ଜୁହାର,
ପ୍ରତିବୋଧି ଯେ ଦଣ୍ଡ ବହୁଛୁରେ । ୪ ।

ଅନାହାରେ କାରାଗାରେ କେତେ ବାଳ,
ନଷ୍ଟୁରେ ମଲେଣି ମରଣ ଅକାଳ ।
ପୂରଣ ହେଉଛି ପର ପାପକାଳ,
ଦୁଃଖ ନଶି ପର ପାଉଛୁରେ । ୫ ।
ଦେଶବନ୍ଧୁ ଦାସ ଲଳଲଜପତ,
ଆଲମହମ୍ମଦ ନେହେରୁ ସୌକତ ।
ଦେଶ ପ୍ରାଣେ ଦେଶ ଭକ୍ତ ପ୍ରତିଶ୍ରୁତ,
ଯାବତ୍‌ ଦୁଃଖ ନ ଯାଉଛିରେ । ୬ ।
ନିଜଲାଗି ନୁହେଁ ସାଧନା ଯାହାର,
ପର ମୁକତିରେ ମୁକତି ଯାହାର ।
ଅହିଂସା ଯାହାର ସଦା ଗଳାହାର,
ତା ଦେହେ କ ରକ୍ତ ବହୁଛିରେ । ୭ ।
ମାନବତା ପ୍ରୀତି ଯାର ମୂଳମନ୍ତ୍ର,
ଜାତୀୟ ଗୌରବ ଯାର ଏକ ତନ୍ତ୍ର ।
ଧନ୍ୟ ସେ ଅଗ୍ରହେ ଯୋଗ ବୀଣା-ଯନ୍ତ୍ର,
ସ୍ୱାଧୀନତା-ସ୍ୱରେ ଗାଉଛିରେ । ୮ ।
କୃପାମୟ ନିରଂଜନ କୃପାକର,
ଝର ବସୁଧାରୁ ସୁଧା ସୁଧାକର ।
ଶୁଣାଇ ଦଅ ମା ସନ୍ତାପ-ସାଗର,
ଦୀନଦୁଃଖୀ ଗୀତେ ଗାଉଛିରେ । ୯ ।

( ୭ )

ବାହ୍ନିକ ରହିଛ ଭଇ ଅଳସେ ବସି ହୋ
ଘର ନେଇଗଲେ ଧନ ସଭିଠୁ କସି ହୋ । ୦ ।

ଲୁଣ, ଦିଆସିଲି, ଛତା
ଛୁରୀ, କଇଁଚି ଓ କୋଦା
ଅକ୍ଷି, ଧାନିଆଁ, କ୍ଷୁର
ନକଲ ନାନା ପ୍ରକାର ।
କାଚ ସଂଖ୍ୟା କାଚମାଳ
ମଡଣା ବେଙ୍ଗି-ପିତ୍ତଳ
ଚେନ୍ ଘଡ଼ି, ଟ୍ରେନ୍-ଗାଡ଼ି
ଦମ୍‌କଲ ହାର୍ଡ୍ୟାଗାଡ଼ି
(ବାବୁ) ବିଳତ ଜିନିଷ କିଣି ମନେ ଖୁସି ହୋ । ୧ ।

(ଏବେ) ଘର ବେଉସା ଘୁଞ୍ଚ ଦେଇ
ସହର ଗଲେ ପଳାଇ
ଦେଶର ଜୀବିକା ବୁଡ଼ିଲା
ଏଥର ଚଳ ମୁଡ଼ିଲା
ପ୍ରମାଦ ଆସି ବଢ଼ିଲା
ଗାଁ ଯେ ଖାଲି ପଡ଼ିଲା
ମୂଲ ମଜୁରି ବଢ଼ିଲା
ନ ଖାଇ ବଂଶ ବୁଡ଼ିଲା
(ଏବେ) ଲକ୍ଷ୍ମୀ ଠାକୁରାଣୀ ଗୃହଲଗଲେ ଛାଡ଼ି ହୋ । ୨

ଦେଇ କପଡ଼ା ବଳଦ
ନିଏ ଜାହାଜ ଭରତ
ଧାନ ଚାଉଳ ଗହମ
ଖାଇବା ଜିନିଷମାନ
ଆମେ ମରିଲେ ଭୋକରେ
ଧନକୁ ଧନ ଦୁଃଖରେ
ଜିନିଷ ଦର ବଢ଼ିଲା
ଏହା ତ କେହି ନ ବୁଝିଲା
ଯେବେ ତା ଜାଣିଲେ ଗାନ୍ଧୀ ମହାଋଷି ହୋ । ୩ ।

ଗାନ୍ଧୀବାଳ ଦାରମ୍ଭାର
କଲେ ଅରଟ ପ୍ରଚାର
ଛାଡ଼ ଯାଅ ଅଦାଲତ
କର ଗ୍ରାମେ ପଞ୍ଚାୟତ
ମଦ ଅଫିମ ଗଞ୍ଜାଇ
ନିଶା କିଛି ଖାଅ ନାହିଁ
ହିନ୍ଦୁ ମୁସଲମାନ ଭାଇ
ଅହିଂସା ଧରମେ ରହି
ନିଜ ଘର ନିଜେ କର
କାହିଁକି ପୋଷୁଛ ପର
ନ ମାନ ସେ କଥା ତାଙ୍କୁ ଦିଅ ହସି ହୋ । ୪ ।

ସତ୍ୟପାଇଁ ଭଗବାନ
ଯୁଗେ ଯୁଗେ ହୋଇ ଜନ୍ମ
କରନ୍ତି ଧର୍ମ ଉଦ୍ଧାର
ଲେଖା ଏ ସବୁ ଗୀତାର

ଆମ ଦେଶର ଦୁରିତ
ହରିବେ ବୋଲି ତ୍ୱରିତ
ଆସିଲେ ଗାନ୍ଧୀ ଗୋସାଇଁ
ସ୍ୱରାଜ କରିବା ପାଇଁ
(ସେ ତ) ତୁମ୍ଭଲାଗି ସଡ଼ୁଛନ୍ତି ଜେଲେ ପଶି ହୋ । ୫ ।

## ( ୮ )

(ହେ) ଦୀନବନ୍ଧୁ କୃପାସିନ୍ଧୁ କୃପା ଜଣା କାହିଁକି ?
ଭାସିଲ ଭାରତ ଅକୂଳ ସାଗରେ [illegible]କି
ଦେଇଥିଲ ହେ ଯାହାଙ୍କୁ କର୍ଣ୍ଣଧାର ପାଇଁକି
ହରି ନେଲ ଏବେ ତାଙ୍କୁ କି ଜଗତୁ ତହିଁକି । ୧ ।

ହରି ନେଇଥିଲ ମହା ଦାଶରଥୀ ଭାଇଙ୍କି
ହନୁମାନେ ଦେଲ ବୁଦ୍ଧି ଜିଣିବା ପାଇଁକି । ୨ ।

(ତବ) ଶକ୍ତିବଳେ ହନୁ ବନ୍ଧ ପାରିଥିଲ ବାନ୍ଧିକି
ମୁଣ୍ଡ ଯେତେ ପ୍ରେମେ ମଜ୍ଜି ବନ୍ଧୁଥିଲ ବାଳକି । ୩ ।

ତବ ଶକ୍ତିବଳେ କୃଷ୍ଣ ଶରଣରେ ଶୋଭିକି
ମଧୁମାସରେ ଗଙ୍ଗାରେ ଅଣିଥିଲେ ବହିକି । ୪ ।

ତବ ଜ୍ଞାନେ ରଚିଥିଲେ ବ୍ୟାସ ମହା ଗୀତିକି
ତବ ଦାନେ ବଳରାମ ଦେଇଥିଲେ ଛିତିକି । ୫ ।

ମାନେ ଋଷି ଗଲ ଧ୍ରୁବ କୃପା ଭିକ୍ଷା ପାଇଁକି
ଧ୍ୟାନେ ଅଛନ୍ତି ସେ ସଦାରେ ଶଙ୍କରଙ୍କୁ ଜଣିକି । ୬ ।

ଦିଅ ସେହି ଜ୍ଞାନ ଧ୍ୟାନ ମାନ ଦାନ ପ୍ରୀତିକି
ମାଗୁଛି ସେ ଶକ୍ତି ସଦା ଶୁଦ୍ଧ ନାହିଁ ଶକ୍ତିକି ? । ୭ ।

ଆମ ଦେଶର ଦୁରିତ
ହରିବେ ବୋଲି ତ୍ୱରିତ
ଆସିଲେ ଗାନ୍ଧୀ ଗୋସାଇଁ
ସ୍ୱରାଜ କରିବା ପାଇଁ
(ସେ ତ) ତୁମ୍ଭ ଲାଗି ସହୁଛନ୍ତି ଜେଲେ ପଶି ହୋ । ୫ ।

## ( ୮ )

(ହେ) ଦୀନବନ୍ଧୁ କୃପାସିନ୍ଧୁ କୃପା ଊଣା କାହିଁକି ?
ଭାସିଲା ଭାରତ ଅକୂଳ ସାଗରେ [illegible]କି
ଦେଇଥିଲ ହେ ଯାହାଙ୍କୁ କର୍ଣ୍ଣଧାର ପାଇଁକି
ହରି ନେଲ ଏବେ ତାଙ୍କୁ କି ଉପାୟ ତହିଁକି । ୧ ।

ହରି ନେଇଥିଲ ମନ୍ତ୍ରୀ ଦାଶରଥୀ ଭାଇଙ୍କି
ହନୁମାନେ ଦେଲ ବୁଦ୍ଧି ଜିଣିବା ପାଇଁକି । ୨ ।

(ତବ) ଶକ୍ତିବଳେ ହନୁ ବନ୍ଧ ପାରିଥିଲା ବାନ୍ଧିକି
ଗୁଣ୍ଡୁଚି ଢୋ ପ୍ରେମେ ମଜ୍ଜି ବନ୍ଧିଥିଲା ବାଲିକି । ୩ ।

ତବ ଶକ୍ତିବଳେ ଜିଷ୍ଣୁ ଶିରପରେ ଶୋଭିଲ
ମହିମାରେ ଗଙ୍ଗାଧର ଆଣିଥିଲେ ବହିକି । ୪ ।

ତବ ଜ୍ଞାନେ ରଚିଥିଲେ ବ୍ୟାସ ମହା ଗୀତିକି
ତବ ଦାନେ ବଳିରାଜା ଦେଇଥିଲେ ଖିତିକି । ୫ ।

ମାନେ ରଖି ଗଲା ଧ୍ରୁବ କୃପାଭିକ୍ଷା ପାଇଁକି
ଧ୍ୟାନେ ଅଛି ଭକ୍ତ ପ୍ରସାଦେ ଶଙ୍କରଙ୍କୁ ଜିଣିକି । ୬ ।

ଦଅ ସେହି ଜ୍ଞାନ ଧ୍ୟାନ ମାନ ଦାନ ପ୍ରୀତିକି
ମାଗୁଛି ସେ ଶକ୍ତି ସଦା ଶୁଣୁ ନାହିଁ ଶ୍ରୁତିକି ? । ୭ ।

( ୯ )

ଗାଅ ଗାନ୍ଧି ଜୟ ଗାଅ ଜୟ ଜୟ ବୋଲି
ବଦନ ଭରି ଗାଅ ଗାଅ ହେ । ୦ ।

ଜୟ ଗାନ୍ଧି ଜୟ ଗାନ୍ଧି ବୋଲି ନାଚ ଭାଇ ବାନ୍ଧୁ ଟୋଳି ରେ
ପ୍ରେମେ ଦେଇ ତାଳି ନାଚ ଚଳି ଚଳି ଗାଇ ଜୟ ଜୟ ହେ ।୧।

ମହାତ୍ମା ମୋହନ ଦାସ ଦ୍ୱାରକାପୁରରେ ବାସ
ଦ୍ୱାପର ଦ୍ୱାରକା ଦ୍ୱୀପ କୃଷ୍ଣ ଲୀଳାମୟ ହେ । ୨ ।

ଅଧମ ତାରଣ ହରି ଗାନ୍ଧିରୂପେ ଅବତରି
ବନାଶିବା ପାଇଁ ଏବେ ଦୁଃଖୀ ଦୁଃଖ ଚୟ ହେ । ୩ ।

ଘୋଟିଛି ଅଶାନ୍ତି ନିଆଁ ଦେଖୁନା ସାରା ଦୁନିଆ
ତାର ପ୍ରତିକାର ବିନା ଏକା ମହାତ୍ମା ଆଶ୍ରୟ ହେ । ୪ ।

ଦାନବ ଭୂତ ମହରେ ଭାରତମାତା ବନ୍ଦୀରେ
ମୁକୁଳାଇବୁ ତୁ ଯଦ କର ନାହିଁ ଭୟ ହେ । ୫ ।

ମନୁଷ୍ୟ ନବେ ତ ହୋଇ ମନୁଷ୍ୟେ ନ ଡର ଭାଇ
ଜଗତେ ନ ଡର ଆନେ ଏକା ଜଗନ୍ମୟ ହେ । ୬ ।

ଧନ ଜନ ପ୍ରାଣ ଦେଇ ସ୍ୱରାଜ୍ୟ ନିଅ ହେ ଭାଇ
ସ୍ୱରାଜ୍ୟ କରତା ଭକତଙ୍କୁ ଗାଅ ହେ । ୭ ।

ଅରହ ଅସ୍ତ୍ର ବଳେ ସ୍ୱରାଜ୍ୟ ଲଭିବା ହେଲେ
ସେ ତ ସୁଦର୍ଶନ ଚକ୍ର କରିଦେବ ପାପକ୍ଷୟ ହେ । ୮ ।

ଭାରତମାତା ଜ ର ସ୍ୱରାଜ୍ୟ ପ୍ରାପତ ସାର
(ତହୁଁ) ଜଗତ କରତା ଜଗନ୍ନାଥେ କର ଲୟ ହେ । ୯ ।

---

( ୧୦ )

ଅଭାଗିନୀ ମାତା ଦୁଃଖ କ କହିବ ଭାଇ
କହିଲେ ମରମ କଥା ହୃଦ ଦଏ ଦହି
କେତେ କହିବରେ, ଅଭାଗିନୀ ମାତା ଦୁଃଖ କେତେ, ସେ ଦୁଃଖ
କାହାଣୀ ଅନ୍ତ
କେତେ ନିସରେ, କହିଲେ ଯେତେ କେତେ ଗୋଟି ଗୋଟିକର
ଯେତେ କେତେ ।

ଅନାହାରେ ମାତା ମୋର କଣ୍ଠାଗତ ପ୍ରାଣ
ଦେଖି ଯା ରହିଛି ମୋର ନଲଠା ଜୀବନ
କିଂପା ଯାଉନାହିଁରେ, ନଲଠା ଜୀବନ ମୋର କିଂପା ଏ ପୋଡା
ପରାଣ ମୋର କିଂପା ?
ମାଆ ମାଆ ବୋଲି ଡାକ କପାଁ ଯାଉନାହିଁ ରେ । ୨ ।

ତେତିଶ କୋଟି ସନ୍ତାନ ମାତା ମୋ ଜନନୀ
ଏତେ ସୁତ ଥାଇଁ ପୁଣି ଏଡେ଼ ଅଭାଗିନୀ
କାହାଆଗେ କହିବରେ; ଏ ମରମ କଥା, କାହାଆଗେ ଏ
ମରମ ବ୍ୟଥା କାହାଆଗେ ଏ ଦୁଃଖୀ କାହାଣୀ । ୩ ।

କାଙ୍ଗାଳୁଣୀ ହୋଇ ମାତା ବୁଲେ ଦେହି ଦେହି
(ମାତାର) ଅତୁର କାତର ଡାକ ନ ଶୁଣୁଛି କେହି
କାନେ ଶୁଭୁକ ନାହିଁରେ ଅତୁର କ୍ରନ୍ଦନ ଡାକ କାନେ, ମାତାର
କ୍ରନ୍ଦନ ଧ୍ୱନି କାନେ
ପାଷାଣ ପରାଣ ତୋର କ ଟଳେ ଟଳୁନାହିଁ କ ରେ । ୪ ।

ଶୁଖିଛି ବଦନ ତାର ଭୁଟିଲିଣି ଶିରା
ବିଷାଦ କାଳିମା ଦେହ ସାରା ଅଛି ଭରା । ୫ ।

କେଣ ବାସ ଅସହାୟ ଅନାଥିନୀ ବେଳେ
ପାଗଳିନୀ ପରି ସେ ଉଭା ତୋର ପାଶେ
ଭାଇ ବୃନ୍ଦାରେ ବାଟେ; ତାର ଅକୁଳ ନୟନ ଅଡ଼େ ହଇ
ବୃନ୍ଦାବର ବାଟେର
ତାର ବିକଳ କ୍ରନ୍ଦନ ଧ୍ୱନି ଶୁଣରେ ଥରେ । ୬ ।

ଡାକୁଛି ବିକଳ ହୋଇ ଆସ ହୃଏ ମୋର
ବଞ୍ଚାଅ ଜୀବନ ବାଯ ନକରି ଉଚ୍ଛୁର । ୭ ।

ଦେଖୁନାହିଁ ମାତା ଦେହେ ରୁଧିରର ଧାର, ବହୁଛି ଅଜସ୍ର ଭାଇ
ବକ୍ଷ ଧାର
ଧାର ବହୁଛି ବହୁଛି ରେ, ରୁଧିର ଧାର ଆର ଧାର ବହୁଛି, ବହୁଛିରେ
ଜନନୀର ବକ୍ଷୁ ଧାର ଧାର ବହୁଛିରେ ।
ଆଜ ବହୁଛି ଧାରରେ, ପଞ୍ଜାବର ଅତ୍ୟାଚାରେ, ନାରକୀ ନର
ହତ୍ୟାକର
ଭାଇଙ୍କର ବଳିଦାନେ, ଡାୟାରର କ୍ରୂରକର୍ମେ ପାପୀ ଡାୟାରର
କ୍ରୂରକର୍ମେ
ସେହ୍ ରାକ୍ଷସ କଂସରେ, କେତେ ଦେଶ୍ରବୀ ଭାଇଙ୍କ କଲେଣି ଧ୍ୱଂସରେ
ତାର ସୀମା ନାହିଁ, ସୀମା ନାହିଁ । ୮ ।

କେତେ ଦେ ନର ନାରୀ ସୀମା ଯେ ନାହିଁରେ, କେତେ ଜଣା
କେତେ
ଅଜଣା, କେତେ ଗଣା କେତେ ଅଗଣା, ହେବ କଂସ ଧ୍ୱଂସନର
ଯେ ପାପ କରନ୍ତି କଂସ ତାର ବଂଶ ହେବ ଧ୍ୱଂସନର । ଅଜ କୃଷ୍ଣ
ଅବତାର, ଗୋପପୁରର ଗ ଛରୁଟେଯ, କଂସ ପାପ ଭାରାନ୍ତ
ନାଶିବରେ । ୯ ।

ଅହିଂସାରେ ଦେଶ ଅଲ୍ଲା ଲଭିବ "ନ୍ୟାୟ" (ରେ)
ଅଧର୍ମ ଅନୀତି ଯେତେ ହବୁ ନଷ୍ଟ କ୍ଷୟ । ୧୦ ।

ହିନ୍ଦୁ ମୁସଲମାନ ଜୈନ ବୌଦ୍ଧ ଖ୍ରୀଷ୍ଟିୟାନ
ସକଳ ହେଉଛନ୍ତି ହେ ଭରତ ସନ୍ତାନ । ୧୧ ।

ଯେତେଦିନ ଯାଏଁ ଏଇ ମୁସଲମାନଙ୍କର
ଶିଳ୍ପ ଅନ୍ୟାୟର ନୋହୁଛି ଦୂର । ୧୨ ।

ଯେତେଦିନ ହିନ୍ଦୁରେ ନୁହେଁ ପ୍ରତିକାର
ସେତେଦିନ ଯାଏ ସ୍ୱାଧୀନ ନାହିଁ ଲଭିବାର । ୧୩ ।

ସ୍ୱରାଜ ବହ୍ନେ ନାହିଁ ପ୍ରତିକାର ଆଶା
ସ୍ୱରାଜ ବହ୍ନେ ନ ଘୁଞ୍ଚିବ ଦୁଃଖ ନାଶ । ୧୪ ।

ଆସନ୍ତୁ ଆସ ଭାଇ ସବେ ମିଳି ଭାରତ ସନ୍ତାନ
ଉଷାଯୋଗେ ମାତିଣ ଗାଅ ଜନନୀର ଗାନ । ୧୫ ।

ଗାଅ ଗାଅ ଭାରତ ମାତାର ଜୟ ଗାଅ ଗାଅ ହେ
ଗାଅ ଗାଅ ମହାତ୍ମା ଗାନ୍ଧୀଙ୍କ ଜୟ ଗାଅ ଗାଅ ହେ
ଗାଅ ଗାଅ ହିନ୍ଦୁ ମୁସଲମାନଙ୍କର ଜୟ ଗାଅ ହେ
ଗାଅ ଗାଅ ଅଲ୍ଲାଙ୍କର ଜୟ ଗାଅ ହେ
ଗାଅ ଗାଅ ଭାରତମାତାର ଜୟ ଗାଅ ଗାଅ ହେ
ଗାଅ ଭାରତମାତାର ଜୟ ଗାଅ ଗାଅ
ଭାରତମାତାର ଜୟ । ୧୬ ।

( ୧୧ )

ଏତେଦିନେ ଆସିଲା ସୁଦିନ ଏ ଭାରତରେ
ଜାଗିଲେ ସରବେ ନନ୍ଦନ ଓ କନ୍ୟା ମାତୃରେ (ଧ୍ରୁ)
ଡାକ ଡାକ ଥକିଗଲ ଦେଢ଼ଶ ବରଷରେ
ନ ଉଠିଲେ କେହି ଶୋଇଥିଲେ ତ ଅଚେତରେ
ନଥିଲ କି ସାନ୍ଦ୍ର ମୋହ ଯାମିନୀ, ନଥିଲ କି ବହିବାୟୁ—
ସଂଜୀବନୀ
ଚେତନା ପିକ କୁକ୍‌କୁଟ ରବ ନଥିଲ କି ପ୍ରାତରେ । ୧ ।

ଘର ସମ୍ପତ୍ତି ଲେଉଟି ପଶିଥିଲେ କି ବେଳରେ
ଅଲକ୍ଷିତେ ଦେଲ ପରଦେଶୀ ପାଦ ତଳରେ
ନିଜ ଗୋଡ଼େ ଠିଆ ହେବା ହିତ କଥା,
ନିଜ ଘର ଭାଇ ପାଇଁ ନିଜ ମଟା
ଝଟାଇଲେ ସୁଖ ପାଇ ଏ ବାଳିକା
ଭସିଲେ କି ସ୍ରୋତରେ । ୨ ।

ଅଙ୍ଗ ବଙ୍ଗ କଳିଙ୍ଗ କର୍ଣ୍ଣାଟୋତ୍କଳ ସହିତେ
ପଞ୍ଚନଦବାସୀ ଏ ମହାତ୍ମା ମନ୍ତ୍ର ମୋହିତେ
ମାତୃଣ ମାତା ମୁକତ ଲାଗି, ଲାଗିଲେ ମୁନିଗଣେ ଜାଗି
ଅହିଂସାଯୁକ୍ତ ଶାନ୍ତି ସଂଯତ ଏକତା ପ୍ରୀତି ମନ୍ତ୍ରରେ । ୩ ।

ଯାତନା ଯୋଗୁଁ ଚେତନା ଆଜି ହୋଇଲା ଭାରତରେ
ଥିବରେ ଚେତନା ଯେତେ ସହିବା ଅକାତରେ
ବୋହିଲେ ଆଜି ଦୁଃଖିନୀ ଉତ୍କଳ
ଅମିତ ରକତେ ଦଶନ୍ଦ୍ରା ଉଜ୍ଜ୍ୱଳ ?
କଳିକା କୁମାରୀ ପତିବ୍ରତା ନାରୀ ନଶ୍ୱର ନାଶରଚକ୍ରରେ । ୪ ।

ଲୁଚିଥିଲା ଯେଉଁ ଶିଳ୍ପ ପଶୁବଳ ଭୟରେ
ଉଦ୍ଧାରିଲେ ମହାତ୍ମା ଆତ୍ମାର ପୁଣ୍ୟ ବଳରେ
ଯା ପାଇଁ ଦେଶ ବିଦେଶକୁ ଚୁହିଁ, ବସିଲା ନିଜର ପ୍ରାଣ ହରାଇ
ହେଜିଲା ତାହାର ମୁକତି ଆଇ ଶତ୍ରୁର ପ୍ରମୂତରେ । ୫ ।

( ୧୨ )

କେ ଜାଣେ କି ଅଛି ତୋ ମନରେ ଦଇବରେ
କେ କଳିବ ତୋ ଅଦୃଷ୍ଟେ କେତେ ଗୁଣ ଗାଇବରେ । ୦ ।

ଦେଖୁ ଛୁ କେତେ କଷଣ ସହିବ କେତେ ପରାଣ
ସହି ସହି ହେଲ କ୍ଷୀଣ ଆଉ କ୍ଷୀଣ ନୋହିବରେ । ୧ ।

ମୋ ଦେଶ ସୁନା-ପସରା ହେବ କି ଚୂନା ଖପରା
ତାକ ରଡ ଗଉରବ ଧରାଧାମୁଁ ଲଙ୍ଘିବରେ । ୨ ।

ଅକୂଳ ସାଗରେ ନେଇ ଦେଲ, ତରଣୀ ଭସାଇ
କର୍ଣ୍ଣଧାର କେହି ନାହିଁ ନାବ କିଏ ବାହିବରେ । ୩ ।

କୋଟି କୋଟି ପ୍ରାଣ ଆସି ଗଲେଣି ଯେ ସ୍ରୋତେ ଭାସି
ଯିବ ସେହି ସ୍ରୋତ ମିଶି କା ଦେହେ କେ କହିବରେ । ୪ ।

କୋଟି କୋଟି କଣ୍ଠ ଆଜ ଉଠୁଛି ଗମ୍ଭୀର ବାଜ
ସ୍ୱଦେଶ ସଂଗୀତ ରାଜ ତୋ ପ୍ରାଣେ ପଶିବରେ । ୫ ।

ତରଣି ତୋ ମୃଦୁମନ କରିବ ଅତି ଜତନ
ଉତ୍କଳ ତୋ ଦମ୍ଭ କି ଏ ହୃଦ ତରଙ୍ଗେ ଭାସିବରେ । ୬ ।

## ( ୧୩ )

ତୁମ୍ଭ ଯୋଗେ ଭଲ ଗୁନା ତୁମ୍ଭ ବିନା କଳାକନା ନ କହୁଛି ଏଥିନା
ତୁମ୍ଭ ଆଳସ୍ୟ ବଳାଏସ ଅନାହାର ଦେଶେ ଦେଶେ
ଦେଶୀମାନ ହୋଇ ମଲେଣି ଅକାଳେ । ୧ ।

ଲକ୍ଷ୍ମୀ ଯଦ ମହତ୍ତ୍ୱ ରକ୍ଷା ଦେଶର ବତ୍ତ ମା ହୋଇ ଆପ୍ରାଣ
ଅରଣ୍ୟ ବୁଲାଇ ଘରେ ସୂତାକାଟି ଚରଖାରେ
ବିବାଦ କଲହେ ନ ମାତ ବିଫଳେ । ୨ ।

ଅଳଙ୍କାର ଜୀବନକୁ ତୁଚ୍ଛ କରିଦିଅ ତାଲୁ ନେଇ ଯାହା ମନକୁ
ଦାନବର ଦେଶଦ୍ରୋହେ ସେ ଲଗୁ ସବୁ ଦେଶ ଅର୍ଥେ
ସ୍ୱରାଜ୍ୟ ନ ହେଲେ ଆଉ ନ ଚଳେ । ୩ ।

( ୧୪ )

ଚେତ ଚେତ ଭାଇ ବିଦେଶୀ ବସନରେ
(ବିଦେଶୀ) ବସନରେ ବିଳାତି ଫେସନରେ । ।

ଭିନ୍ନ ପରଦେଶୀ ସାଜ ନ ମାଡ଼େ କି ତଳେ ଲାଜ
ପରଘର ଲୁଗାରେ କି ଥାଏ ଭାଇ ସମ୍ମାନରେ । ୧ ।

ବିଦେଶୀ ବେପାରୀ ପୋଷି ସ୍ୱଦେଶ ଦେଇଛ ନାଶି
ଘର ତନ୍ତୀ ମଲେ ହୋଇ ଅକାରଣ ହଇରାଣରେ । ୨ ।

ହେଲୁ ନାହିଁ କି ଉପାୟେ ଘରୁ ଧନ ବୁହାଏ
କିଏ କରୁଛି ରକତ ଗୁପତରେ ଶୋଷଣରେ । ୩ ।

ବରଷକେ ଚଉଷଠି କୋଟି ଟଙ୍କା ନିଏ ସେଟି
ଅଭାବ ହେଲ ଆମ୍ଭଙ୍କୁ ଅଶନରେ । ୪ ।

ସବୁ ଠିକସବୁ ବେଶୀ ଲୁଗାରେ ନିଏ ବିଦେଶୀ
ବେପାରୀ ଗଜାର ଏ ଚତୁର ପଣରେ । ୫ ।

ତବ ହେଲା ଯୋଗେ କି ଦୁଃଖ ଜନନୀ ଭୋଗେ
ଅରଜୁଛ ପାପ ଦେଇ କଷଣରେ । ୬ ।

ଜନନୀର ଏ ସଙ୍କଟେ ଆସ ଭାଇରେ ନିକଟେ
ଜନ୍ମମାଟି ଋଣମୁକ୍ତ ହୁଅ ଆର ଜୀବନରେ । ୭ ।

ଜନନୀ ଜଠରୁ ତଳେ ପଡ଼ିଲେ ପଡ଼ିଲ ବେଳେ
ଟେକି ଧରିଥିଲା କିଏ କୋଳେ କରି ଆଲିଙ୍ଗନରେ । ୮ ।

ଝୁରୁନାହିଁ ତୋ ଅନ୍ତରେ ଭାଇ ବନ୍ଧୁ ସକୁଟୁମ୍ବେ
ଛାଡ଼ିଗଲେ ତୋତେ ପୁଣି କିଏ ଦେବ ଅଶନରେ । ୯ ।

ଯେଉଁ ଲୁଗାପାଇଁ ଜନମୀ ହେଲ ଆଜି କାଙ୍ଗାଳିନୀ
ସେ ଲୁଗାକୁ ଆଜି ଭାଇ ବେଗେ କର ଦହନରେ । ୧୦ ।

କହିଲ ଅନୁଛ ଯାହା ଆମ୍ଭର ବିଶୁଦ୍ଧ କାୟା
ହେଲେହେଁ ସୁଲଭ ଯେତେ
ନାହିଁ ତହିଁ ପ୍ରୟୋଜନରେ । ୧୧ ।

ଗରିବ କାଂଗାଳ ଭାଇ ଯେତେହେଲେ ଆମ୍ଭ ଭାଇ
ଉଚିତ ନୁହଇ କେବେ ଅପଦାର୍ଥ ବିତରଣରେ । ୧୨ ।

( ୧୫ )

ଶିଳ୍ପି ଶିରୋମଣିର ଟେକ କରଇ ଚୂର
 କୋଣାରକ କାନ୍ଥ ଭୁବନେଶ୍ୱର
ବଡ଼ଦେଉଳ ଶିଖର ଚାହିଁଲେ ଘୂରଏ ଶିର
ବିଶ୍ୱକର୍ମା ବରପୁତ୍ର ଯା'ର କୁମର
ତା' କୁମର ତୁମ୍ଭେ କି ନୁହେଁ ଚିନ୍ତେ ମନେ । ୧ ।

ମହାତ୍ମା ଶ୍ରୀଚୈତନ୍ୟ ନରଶରୀରେ ପ୍ରେମ
କୃପାକରି ମୋର ଭାଗ୍ୟେ ଜନମିଲେ
ଯେ ଜାତି ଜନମ ସ୍ଥାନ ଭାରତେ ପବିତ୍ର ଧାମ
ଯହିଁ ଜଗନ୍ନାଥ ବିଜେ ଜଗତତ୍ରାତ
ତା ସନ୍ତାନ କିଂପା ଆଜ ଅଧୋବଦନେ । ୨ ।

ବୀରାଧିବୀରବର ଗଜପତି ଗୌଡେଶ୍ୱର
 ରୁଦ୍ରଦେବ ଭୂପତିବର
ନବକୋଟି କର୍ଣ୍ଣାଟ ଉତ୍କଳର ସମ୍ରାଟ
କେତେ ନରପତି ଯାଙ୍କ ପାଦଗତ
ନୁଆନ୍ତି ମସ୍ତକ ଶ୍ରୀଛାମୁଙ୍କ ଦର୍ଶନେ । ୩ ।

( ୧୭ )

ଜାଗ ଜାଗ ଭାଇ ହେ ଲଗ ଲଗ ଯତନେ
ଭାରତ ଜନନୀର ଗଉରବ ଗଠନେ
କି ଥିଲକି ହେଲରେ ଭାବନା ଭଲ ଥାରେ
ରାଣୀ ମୋର ଅଙ୍କରେ ଭିଖାରୁଣୀ ମଉନେ । ୦ ।

ଜୀବନ୍ତେ ଯାହାର ଝୁଟୁଥିଲ ବଦନେ ସଭ୍ୟେ ଜଗତ ସାରା
କିର୍ତ୍ତି ଆଜ ଲାଂଛିତ ଆଜ ସେ ଆଜ ଗରିମାହାରା
ଡାକୁଛି ହେ କାତରେ ଶୁଣ ତା ଡାକ ଥରେ
ଜଳିଯାଏ ହୃଦୟ ଅପମାନ ଦହନେ । ୧ ।

ଯଶୋଗାନେ ଯାର ମୁଖରିତ ସଦା ଗଗନ ଅବନୀ ସିନ୍ଧୁ
ନାହିଁ କି ହେ ତବ ଧମନୀରେ ସେହି ଆର୍ଯ୍ୟ ଶୋଣିତ ବିନ୍ଦୁ
ଉଠ ଉଠ ଭାଇ ହେ ଆଉ ବେଳ ନାହିଁ ହେ
ଜନନୀର ପାଇଁ ହେ ସଁପିଦିଅ ଜୀବନେ । ୨ ।

( ୧୭ )

ମୋର ଭଙ୍ଗା କୁଡ଼ିଆରେ ଭଙ୍ଗା ପଗଣରେ
ଭଙ୍ଗା କବିତାକୁ ଯୋଡ଼ୁଥିଲି
ମୋର ଭଙ୍ଗା ଜୀବନକୁ କବିତା ଡଙ୍ଗାରେ
ଭସାଇ ଦେବାକୁ ନେଉଥିଲି ( ଧ୍ରୁବ )

ଭଙ୍ଗା ଡଙ୍ଗା ଖଣ୍ଡେ ଭସି ଭସି
ମନ-କୂଳେ ଦେଖା ଦେଲା ଆସି
(ତାକୁ) ସଜାଇବା ଲାଗି ଚିନ୍ତା ଭଉଁରୀରୁ ଓହ୍ଲାଇ
ମଗଜକୁ ମୋଡ଼ୁଥିଲି । ୧ ।

ଭଙ୍ଗା ପଦ ଯୋଡ଼ ଦିଏ ଯେତେ
ଜଂଜାଳର ତେଜ ବଢ଼େ ସେତେ
ଜୀବନ ଗୋଟିକେ ଜଂଜାଳ କୋଟିଏ
ଖାରକୁ ଖାରରେ ପୋଡ଼ୁଥିଲି । ୨ ।

ଭଙ୍ଗା ଭାଗ୍ୟେ କି ମିଳେ କବିତା
କବି ହୃଦ ସୁର୍ଯ୍ୟରୁ ସବିତା
ଭଙ୍ଗା ଡଙ୍ଗା ଧରି ପାରି ହେବି ବୋଲି
ଭଙ୍ଗା ଚରଣକୁ ନେଉଥିଲି । ୩ ।

## ( ୧୮ )

ଢହ ଯାହା ସ୍ୱରୂପ ଲଭିବ କି କାହିଁ ( ଧ୍ରୁବ )
ଚନ୍ଦ୍ର କି ଲଭେ ତାର ଆଲୋକେ
ସୂର୍ଯ୍ୟ କି ଲଭେ ବାଦଲର ଛାଇଁ । ୧ ।

ବୀର କି ଲଭେ ରଣ ଅଙ୍ଗନେ
ନାରୀ କି ଲଭେ ଯଉବନକୁ ପାଇ । ୨ ।

ଦାନୀ କି ଲଭେ ସେ ଦାନ ହୋଇଲେ
ନୀଚ କି ଲଭେ ବଡ଼ପଣକୁ ପାଇ । ୩ ।

ପୁଣ୍ୟ କି ଲଭେ ଅନାଗ୍ରହରେ
ପାପ କି ଲଭେ ନେପଡ଼ରେ ଘୋଡ଼ାଇ । ୪ ।

( ୧୯ )

ଦାନ କ ନୁଅ ଭବନା ମୋ ଏକୁ ଦେଖେ, ଭକ୍ତ ବର୍ଷେ (ଧ୍ରୁବ)

ଦାସ କୁମର ହରିଶ୍ଚନ୍ଦ୍ର ଖାର
ବରଜିଲେ ଚଣ୍ଡାଳ ବେଶେ । ୧ ।

ଦାତା କରନ-ତନୟର ତନୁ-
କାଟି ଦେଲେ ମନ ଉଲ୍ଲାସେ । ୨ ।

ବାମନ ତିନି-ପାଦ ମେଦିନୀ
ନେଇ ଚୁପିଲେ ବଳି ଶେଷେ । ୩ ।

ଦଧୀଚିର ଦାନ—ଅସ୍ଥି କି ସମାନ
ଅସ୍ଥି ବଜ୍ରର ସମାବେଶେ । ୪ ।

## ( ୨୦ )

( ଦେଶ ମିଶ୍ରଣ ଦେଉଳ ରଚିତ )

କି ହେବ ଏ ମୁଣ୍ଡକଟା ଦେଶକୁ ଦେଖି
ମୁଣ୍ଡକଟା, ଗୋଡ଼କଟା ପଙ୍ଗୁକୁ ଦେଖି
ମୋ ଜନନୀ କି ସୁନ୍ଦର—ସିଂହଭୂମି ତାର ଶିର
ମେଦିନୀପୁର ମଞ୍ଜୁଷା ପଦ୍ମର ବେଣି । ୧ ।

ଝୀଖାଲ ତା ଅଙ୍ଗ ଝୀକା
ସମ୍ବର ଗୃହ ଛୁଟିକା
ଫୁଲଝର ଫୁଲଝରୀ ସୁଷମା ବେଣୀ । ୨ ।

ମୋ ଜାତି କେତେଡ଼େ ମହତ
ହୋଇଛି ଚେତନା ହତ
ତିନି ଦେଶେ ବନ୍ଧା ଜଳଧାର ତ୍ରିବେଣୀ । ୩ ।

ମୋ ଜାତି କୃଷକ କୁଳ
ଭର ଘରରେ ଅକୂଳ
ଦୁଃଖ ଯିବ ପୂର୍ଣ୍ଣ ଅଙ୍ଗ ହେଲେ ଜନନୀ । ୪ ।

( ୨୧ )

କାହୁଁ ଅଇଲେ ବିଦେଶିରୁ ବେପାରୀ
ସବୁ ଯାଇଲେ ହେଲୁ ଆମେ ଭିଖାରୀ । ଧ୍ରୁବ

ଇଂରେଜ-ଇରାନୀ-ଜର୍ମାନୀ-ଜାପାନୀ
ଚୀନା କାବୁଲି ଏ ଦେଶ ସେ ପାରି । ୧ ।

ଚକ ଚକ ଚୁଇନା ମାଟିର ବାସନ
ସାରିଦେଲା ବୃତ୍ତି ଦେଶ କଂସାରି । ୨ ।

ଫରାସୀର ଫେନ୍ସି କାମ—ଜାପାନର ସସ୍ତା ଦାମ
କଟେଲରି ଡ୍ରେସର ସୁଇଟ୍ ସେଣ୍ଟ୍ ପର୍ଫ୍ୟୁମେଞ୍ଜ
ହାତ ଶଂଖା ମାରିଦେଲା ଶଂଖାରୀ । ୩ ।

ନକଲି ଚଦର ଜାପାନୀ ଚଦର
ଗାନ୍ଧି ଲୁଗାକୁ ହେଲା ଭଗାରି । ୪ ।

( ୨୨ )

କି ହେବ ସେ ସ୍ୱରାଜ୍ୟ ଯେବେ ଯେତେକି ମୋର ନ ପୂରେ ପେଟ
ଝଟି ଖଟି ମଲେଣି ମୂଲିଆ ଚାଷୀ ଦେଖି ଦୀନା-ହୀନା ନିଅଣ୍ଟ (ଧ୍ରୁବ)

ଅଧମାଣେ ଜନ୍ମ ଜଣକା
କୋରଡରେ ସେ ପୁଣି ଲଢା
ଗାଁର ସଭିଏଁ କରଜ କରନ୍ତି ଜଣେ ଦୁଇଜଣ ବନ୍ଧେଇ ସେଠ । ୧

ବସ ପଛେ ଲାଟ୍ ଆସନେ
ମନ୍ତ୍ରୀ ହୁଅ ନୂଆ ଶାସନେ—
ଚାଷୀ ଯେ ଭୂମିରେ ଚାଷୀ ସେ ଭୂମିରେ
ସୁଖ ସଙ୍ଗେ କେବେ ହେବନି ଭେଟ । ୨ ।

ଧଳା ସ୍ଥାନେ କଳା କରତା
ହୁଅ ପଛେ ଦୈବ ବିଧାତା
ଧନୀକ ଦରିଦ୍ର ଭେଦ କି ଘୁଞ୍ଚିବ ବଡ଼ବଡ଼ିଆଙ୍କ ନଜର ହେଠ । ୩ ।

ମୋ ଭାଇର ବାଠୀକୁ ବାଠୀ
ଅମାର ତ ପଡ଼ୁଛି ଫାଟି
ମୋର ଚାଲେ ନାହିଁ ଛପର କୁଟାଟି
ମୋ ଭାଲ ଶୋଇଛି ଛପର ଖଟ । ୪ ।

( ୧୩ )

(ନିଖିଳ ଉତ୍କଳ ନେତା ସମ୍ମିଳନୀ, କଟକ ଅଧିବେଶନ ଉପଲକ୍ଷେ)

ଭିକ୍ଷ ଭିକ୍ଷ କେଉଁ ଜାତି ପାଇଛି ମୁକତି
ଫିରି ଦ୍ୱର ଦ୍ୱାର ଗୁହାରି;

ଭିକ୍ଷ ପାଇଛି କେ ସୁଖ ଲଭିଛି ଦୁଃଖ
ମାଗି ମାଗି ପଥ ଭିକାରି ( ଧ୍ରୁବ )

ଯେବେ ବାଘ ମୁହେଁ ପଡ଼େ ଶିକାର
ମିନତିରେ ପାଏ କସେ ଉଦ୍ଧାର

ଛୁଡ଼ି କି ଦିଏ କେବେ ଧୀବର ଜାଲରୁ
ନ ଗଲେ ମୀନ ଆପେ ବାହାରି । ୧ ।

ଦେଖ ଆଇରିସ୍, ଚୀନ, ଜାପାନ
ଆମେରିକା, ଅଫଗାନ ପଠାନ
ପଣ ପାତି ହେଲେ ମୁକତି ଜୀବନ-ମରଣ ନ ବିଚାରି । ୨ ।

(ଆଜ) ଅଭିମନ୍ୟୁ ପରି ଘେରି ଚକ୍ରଦଳୁଁ ଜନନୀ କୁମାରୀ
ଆତ୍ମଶକ୍ତି ସୁବିକାଶ ସୁଦର୍ଶନ
ଚକ୍ରଟି କରିଦେବ ପାରି । ୩ ।

( ୨୪ )

ମୁଁ ଯଦି ମନ୍ତ୍ରୀ ହୁଏ ମୋହର ଜୀବନ ଧନ୍ୟ ହେବ
ଇଚ୍ଛା ଖାଲି ଗ୍ରେଟ ଉପାଧିରେ ଶ୍ରମ କି ମୋହର
ସଫଳ ହେବ । ଧ୍ରୁବ ।

କଲିଣି ମୁଁ କେତେ ଗୋଲମି
ସହିଲଣି ଦେଇ ସଲମି
ଖୋସାମତ କରି ଫେରି ଖାଲି ମିଳୁଛି ଢୋଟାଏ
ଘଏସା ହେବ । ୧ ।

ମନ୍ତ୍ରୀ ହେଲେ ଟଙ୍କା ହଜାର
ହେବ ସିନା ମୋ ରୋଜଗାର
ନଥାଉ କ୍ଷମତା ପଛେ ମନସାଦ ମୋର ମେଣ୍ଟନ ହେବ ।୨।

ହୋନ୍ତି ଯେବେ ସାର ଅବା ନାଇଟ୍
ଦଲ୍ ମୋର ହୁଅନ୍ତା ଟାଇଟ୍
ଗଳାରେ ମୋ ପୋଷା କୁକୁରର ମଖମଲ ବକ୍ଲିସ ଭରି ସାଜିବ ।୩।

ଲାଟ ଯଦି ଦିଅନ୍ତି ତଡ଼ି
ମାଗିବି ମୁଁ ଚରଣେ ପଡ଼ି
କ୍ଷମାଦିଅ କ୍ଷମାଦିଅ ଦାସେ ଆହେ ପ୍ରଭୁ ସ୍ୱର୍ଗଦେବ । ୪ ।

( ୨୫ )

ରାଗ-ଭୈରବୀ, ତାଳ-ତିତାଳ

ମୁଁ ଡାକୁଛି ଦୟାନିଧି ଯେତେବେଳେ ଆକୁଳେ
ଉଭ ହୋଇଛ ଆସି ପିନ୍ଧି ପୀତ ଦୁକୂଳେ । ଧ୍ରୁବ ।

ଭୁଲି ମୁଁ ଯାଏ ଯେବେ ସଂପଦ ସୁଖ ଭୋଳେ
ଚେତାଇଦିଅ ଥାଇ ବିପଦ ଆଖି ଡୋଳେ
ହେଲେ ମୁଁ ଉଦାସୀନ ନକର ଅଭିମାନ
ଆସ ନିକଟେ ପୁଣି ଡାକିଲେ ମୁଁ ବ୍ୟାକୁଳେ । ୧ ।

ନିରାଶ୍ରୟ ଜନର ଆଶ୍ରୟ ଆଦିମୂଳ
ବିପଦ ବାରିଧିରେ ତୁମ୍ଭେ ଲଗାଅ କୂଳ
ତୁମ୍ଭପରି ନାବିକ ନାହାନ୍ତି ତ୍ରିଜଗତେ
ଶ୍ରୀପଦ ତରୀ ଧରି ତରନ୍ତି ଏ ମରତେ

ମୁହିଁ ନୁହେଁ ଗୋଟିଏ ମୋ ପରି ତ କୋଟିଏ
ଭରମେ ପଥ ହୁଡ଼ି ବୁଲୁଥାନ୍ତି ବାତୁଳେ । ୨ ।

( ୨୭ )

ମାର ମତ କହିବାକୁ ନାହିଁ ଦୃଗ
ସେ କେଉଁ କାଳରେ ହେବ ଗଣା
(ଭାଇ) ଇଙ୍ଗିତେ ଅବା ସଙ୍କେତେ
କାରାଗାରେ ଯାଉ ବୃନ୍ଦାବଣା । ଧ୍ରୁବ ।

ମନ ଖୋଲି ଯେ କହିବ କଥା
ଅବା ଷତ୍ରରେ ଲେଖିବ ସତ କଥା
ଅପରାଧୀ ଅପରାଧୀ ଦଣ୍ଡ ତାର ହେବ ଅକଳନା । ୧ ।

ସ୍ୱଇଚ୍ଛାରେ ସେ କାହିଁ ଯାଇ ଆସି ପାରିବ ନାହିଁ
ବନ୍ଧନେ ଚିର ରହିବ କାଗାଏ ନ ଛୁଡ଼ିବ ନିଜ ଭୂଇଁ
ଦେଶ ପ୍ରେମ ଯାର ବଳି ଗଲା ସେତ
କଳାପାଣି ପାରେ ହେବ ମଣା । ୨ ।

ଅହିଂସାରେ ଯେବେ ନାହିଁ ପାହୁ
ତେବେ ଶାନ୍ତି ଭଙ୍ଗ ହେବ ତ୍ରାହି
ଯେନ କେନ ପ୍ରକାରେଣ
ଶ୍ରୀମନ୍ଦିରେ ଯାଇ ଠେଲ ଘଣା । ୩ ।

( ୨୭ )

ଶ୍ୟାମ ସୁନ୍ଦର ମୋହନ ପ୍ରୀତି ମୂରତି
ଜଗବନ୍ଦନ ଜୟ ଜୟ ଜଗତ ପତି । ଧ୍ରୁବ ।

ଗୋପୀ ନିରଞ୍ଜନ ରାଧିକା ପତି
ନନ୍ଦନନ୍ଦନ ଗୋବିନ୍ଦ ଯଶୋଦା ଗତି

କେଶୀ କଂସ ନିସୂଦନ ମଧୁ ମୁରାରି
ବିପିନବିହାରୀ ମୁରଲୀଧାରୀ
ବେଣୁ ବାଦନେ ଜନ ମନ ଚଞ୍ଚଳ ଅତି ।

## ( ୨୮ )

### ରାଗ-ଅସାବରୀ ତାଳ ଝେଢେସ

(କମ୍ପା) ଦେଲ ହେ ବିଧି ବୁଦ୍ଧି ମାନବେ
(ଟେକ) ଗନ୍ତ୍ରୁ ଜୀବେ ଝେଦେ ଦାନବେ
କି ଦୋଷ ଅଛୁ ତାକୁ·ଦାନବ ବୋଲିବାକୁ
ପଶୁବଳି କି ହାନି ଏ ଭବେ । ଧ୍ରୁବ ।

କ୍ଷୁଧା ତୃପତ ଆନ ନାହିଁ ପଶୁର ଧ୍ୟାନ
ନ ଜାଣେ ଲୋଭ, ମୋହ, ଗରବ, ଅଭିମାନ
ମାନବର କାମନା କେ କରିବ କଳନା
ଦଣ୍ଡିବା ଲାଗି ଦଣ୍ଡ ସରବେ । ୧ ।

ପ୍ରାଣଥାଇ ଅପ୍ରାଣ ନାହିଁ ମାୟା ମମତା
ଜ୍ଞାନ ଥାଇ ଅଜ୍ଞାନ ବୁଝେ ନାହିଁ ସମତା
ଅନ୍ଧ ସେ ଆଖି ଥାଉଁ ମରଣ, ଆପଣା ପର
କାଲ ସେ ଜ୍ଞାନ ଥାଉଁ ଶୁଣେ ନା ବନ୍ଧୁ ଗୀର
ଚିନ୍ତା ପର ଅହିତ ନ ଭାବେ ଅନୁଚିତ
ବିବେକ ବୋଲି ନାଚେ ଗରବେ । ୨ ।

ଶାନ୍ତ ପସରା ରୂପେ ସୃଜିଥିଲ ଜଗତ
ବୁଦ୍ଧି ଦେଇ ଭେଟିଲ ଅଶାନ୍ତିର ସରିତ
ଦେଇ ନଥାନ୍ତ ଯେବେ ବୁଦ୍ଧି, ବିବେକ, ଜ୍ଞାନ
ନ ପାଉଥାନ୍ତେ ବ୍ୟଥା ଏତେ ନିରୀହ ପ୍ରାଣ
ମାନବ ଶୂନ୍ୟ ପଟେ ହୋଇଥାନ୍ତା ଧରଣୀ
ବିରାଜୁଥାନ୍ତା ଶାନ୍ତ ପରବେ । ୩ ।

( ୨୯ )

ଭଲ ମନ୍ତ୍ରଣା ଲଗିଲା ମନ୍ତ୍ରୀ ସଭାରେ
ବମ୍ବେଇ ବିହାର,ଓଡ଼ିଶା ମାନ୍ଦ୍ରାଜ ଆମ ପ୍ରଡ଼ିଶା
ଯୁକ୍ତ କି ଅବା ମଧ୍ୟଦେଶ ମନ୍ତ୍ରଣା । ଧ୍ରୁବ ।

ଯେତେ ହାକିମ ହୁକୁମା ଦୁଅନ୍ତି
ମୋଟା ଦରମା ଯିବ ବୋଲି କହନ୍ତି
ମନରେ ନାହିଁଟି ସୁଖ—ଜୀବନ ଥାଇ କି ଲାଭ
ଅଚ୍ଛା ଫିକର କାଢ଼ିଲ ଗାନ୍ଧି । ୧ ।

ଉଠୁ ମଦ, ଅଫିମ, ଭାଙ୍ଗ ନିଶା
ଶୁଣି ପଟ୍ଟାଦାର ଉଡ଼େ ହଂସା
ମାହାଜନ ସୁଧ ପାଉଣା—କରଜ ଦେବାର କଟକଣା
ଆଇନ୍ ଖଣ୍ଡା ହେବ ତିଆର । ୨ ।

ପକ୍କା ମାହାଲ ଜମିଦାର ରଜା
ଧନ ରଖି ଗଞ୍ଜୁଥିଲେ ପରଜା
ସରିଯିବ ତାଙ୍କ ସଞ୍ଜୁତ—ଅନ୍ୟାଗ୍ରହ ନାରଖୀ
ଗୃହି ହେବ ସିନା ଦେଶ ମାଲିକ । ୩ ।

ଝେଦେ ପୋଷାକ ପିନ୍ଧି ଚୂଙ୍କରିଆ
ନୂଆ ସାଜେ ସାଜିବେ କଚେରିଆ
ଜାତୀୟ ପତାକା ଫର ଫର ଉଡ଼ିବ କଚେରି ଘର ଘର
ସ୍ୱରାଜ ସତେ କି ହସ୍ତଗତ ମନ୍ତ୍ରଣା । ୪ ।

( ୩୦ )

ରାଗ—କେମ୍ବାର    ତାଳ—ତ୍ରିତାଳ

ଗାଓ ରଘୁପତି ନାମ ହରଷେ
ରାଘବ ରାମଚନ୍ଦ୍ର ନାମ ସରସେ (ଧ୍ରୁବ)

ସୀତାପତି ସୁନ୍ଦର ସୁମରଣ ପ୍ରଭାତେ
ପାପ ତାପ ନାଶେ ନାମ ଗୁଣ ପରଶେ । ୧ ।

ଆନନ୍ଦ ଘନ ପ୍ରଭୁ ଆନନ୍ଦ-ଦାୟୀ
ପରକାନୁରଞ୍ଜନ ରାଜା-ଦରଶେ । ୨ ।

କୋଦଣ୍ଡଧାରୀ ବୀର ବନଚାରୀ
ଧୀରମୁଖ ସୁନ୍ଦର ସୁଧାଧାରା ବରଷେ । ୩ ।

( ୩୧ )

ଛୁଇଁ ଦେଲେ ଛୁଆନ୍ତା ମୁଁ ହେଲି ଗଲା ମୋ ଜାତି
କେତେ ପାପ ନ କରୁଛନ୍ତି ନିତି ପାହୁଲେ ରାତି ( ଧ୍ରୁବ )

ଜାତିରେ ମୁହିଁ ବ୍ରାହ୍ମଣ
ବିଧବା ପଣକୁ ପଣ
ଔଷଧ ମୂଳ-ମୂଳିକା ଦେଇ ନାଶିଲି କେତେ ଭ୍ରୂଣ
ଏବେ ସେ ଅଛୁଟରେ ବହୁତ ପରା ନିଜେ ମୁଁ ସମାଜ-ପତି । ୧ ।

ପାଞ୍ଚ ବରଷର କନିଆଁ—
ହେଉ ବୁଢ଼ାବର ପଛେ ଦେନିଆ
ହଜାରେ ଟଙ୍କା ଥଳୀରେ ହୋଇବ ଯାହା କହୁ ସାରା ଦୁନିଆଁ
ଏବେ ଯାଗ କରି ପାଅର ହୋଇବ ଧନ ରଖିଥିଲେ ସାଇତି । ୨ ।

ମୁଁ ହେବି ଯଦି ଧର୍ମ ପଢ଼ୁଆ
ହେବି ସବୁଠାରୁ ବେଶୀ କାଢ଼ୁଆ
ବଳତି କୁକୁର ଯେବେ ଶୁଆଇବ ନାହିଁତ ସେଥିରେ ଅଡୁଆ
(ଘରେ) ଗଇବକୁ ଭଣ୍ଡି ଦଣ୍ଡି ନେବାଲାଗି ବ୍ରାହ୍ମଣେ ଦେବି ମୁଁ ବରାତ

ହେବି ଯେବେ ମୁଁ ମୁସଲମାନ
ହାକମ ହୁକୁମ ଖ୍ରୀଷ୍ଟିଆନ
ପାଣ ଅବା ଗୋଖା, କଣ୍ଡରା ହୋଇଲେ ନାହିଁତ ସେଥିରେ ଅଭିମାନ
ସମାଜପତିଙ୍କ ସଲାମ୍ ପାଇବି ସମାଜେ ଫୁଲାଇ ଛାତି । ୪ ।

ଛୁଆଁ ଅଛୁଆଁ ଅଗୁର
ଜାତି ଅଜାତିର ବିଗୁର
ନିଜର ସ୍ୱାର୍ଥଲାଗି ପରଚୁର କରନ୍ତି ଦୁଷଣକାର
ପାପ ପୁଣ୍ୟ ଅବା ଜାତି ଅଜାତିକି ଧନ ଦେଇ ତରିଯାନ୍ତି । ୫ ।

( ୩୨ )

ଇଣ୍ଡିଆନ୍ ବୁରୋକ୍ରେସିକୁ ଇଣ୍ଡିଆନ୍ ମୋର ଜୁହାର
ଇଣ୍ଡିଆନ୍ ସ୍ୱଣ ହେ ଆସି କ ଧନ ଟ୍ରେଣ କାଙ୍ଖାର ( ଧ୍ରୁବ )

ସିଭିଲିଏନ୍ ଦେଶୀ ବୋଲି
କୁହେଣ୍ଟୁ ଫୁଲିଯାଏ ମୋ ଛାତି
ବ୍ଲଡ଼୍, ଡେମ୍ ଫୁଲ ବୋଲି ଏଲିଟି ଗୋଇଠା ପ୍ରହାର । ୧ ।

ଆଇଏମ୍ସ୍ ସିଭିଲ୍ ସର୍ଜନ କଲା ବୋଲି ଗଲି ପାଖକୁ
ସାହେବୀ ଠାଣିରେ ବସି ହାକିମ୍ ମିଜାଜ୍ ଲଗତେ ବାହାର । ୨ ।

ମୋ ଭାଇ ଆଇ. ପି. ଏସ୍
ଦୁଃଖ ମୋର ନହେଲା ଶେଷ
ଡକାୟତି ମଡ଼ରକେସ୍‌ରେ ନାହିଁ ତାର ତିଳେ କେୟାର । ୩ ।

ଆଇ. ଇ. ଏସ୍ ପ୍ରଫେସର୍
ବଡ଼ ବଡ଼ ଦରମାବାଲା
ଘଣ୍ଟା ଦୁଇ ପଢ଼େଇ ଦେଇ ଦିନଯାକ ତାସ୍, ପାନ । ୪ ।

ଇଣ୍ଡିଆନ୍ ମିଲେଟାରି ହେଲେ ମୋ ଦେଶ-ଭାଇ ସ୍ୱାଧୀନ ହେବେ
ଗୃହସ୍ଥେ ହୁକୁମ ଗୃହର ଭାଇଙ୍କୁ କରିବେ ଗୁଳି ଫାୟାର । ୫ ।

ଇଣ୍ଡିଆନ୍ ଗଭର୍ଣ୍ଣର୍
କେ. ସି. ଏସ୍. ଆଇ କେତେ ସାର୍
ବଡ଼ା ବଡ଼ା ଆଇନ ଲାଗି କାଳି, କାଗଜ, କଲମ ତୟାର । ୬ ।

---

( ୩୩ )

## ଗଜଲ୍—ଅଧାଳ୍‌ଗବାଲ

ଆଖିକୁ ସମାନ ଦିଶିଲେ କ ହେବ
　　ନେହୀ ଭଗ୍ୟ ଧେନ ହୋଇଛ ଜନମ
ଛାନିଲେ କ ହେବ ଫାନ୍ଦିଲେ କ ହେବ
　　ଭୋଗିବାକୁ ହେବ ନିଜର କରମ ( ଧ୍ରୁବ ) ।

ଏକ ବୃକ୍ଷରୁ ଯେ ଦୁଇ ଶାଖା କାଟି
　　ଦୁଇ କାର୍ଯ୍ୟ ପାଇଁ ହୋଇଯାଏ ବାଣ୍ଟି
ଆଶା ବାଢ଼ ଅବା ଅସନ ଖଣ୍ଡିଏ
　　ଆନ ଜଳୁଥାଇ ଚୁଲ୍ ଶମଶାନ । ୧ ।

ଏକ ଶାମୁକା ଯେ ଦୁଇଭାଗ ହୋଇ
　　ଶଙ୍ଖ ହୋଇ ଦୁଇ ନାମକୁ ବୋଲାଇ
ପାର୍ଜୈଶ ହେବାକୁ ଜନମ ଗୋଟିଏ
　　ଆନ ଜଳୁଥାଇ ମୁକୁଟ ଭମାନ । ୨ ।

ଏକ ପିତା ମାତା କୁମର ଯମଜ
　　ସାନ ବଡ଼ ବାର ନୋହିବା ସହଜ
ଜଣିଏ ହୋଇଛୁ ପଥର ଭିଖାରୀ
　　ଆନ ଅଧିକାରୀ ରାଜ-ସିଂହାସନ । ୩ ।

ଏକ ବୃକ୍ଷେ ଦୁଇ ସୁମନ ଶୋଭନ
　　ସୁଗନ୍ଧରେ ସେହୁ ମୋହେ ଜନମନ
ଗୋଟିଏ ହରଜେ ଶିବ ମସ୍ତକରେ
　　ଆନଟି ଶବର ଶିରରେ-ମଣ୍ଡନ । ୪ ।

## ( ୩୪ )

କମ୍ପା କର ଗରବ ସରବ ଜାଣି କ୍ଷଣିକ
ମନେ କି ଭବ କେହ୍ନ ନାହିଁ ତୁମ୍ଭଙ୍କୁ ଜଣିକ
ଦାଦପ ସ୍ଥାନ ଦେଶେ ଗଦ ଗୋଷ୍ଠିର ଗରବ
ଗହନ ବନ ଦ୍ରୁମ ପାରନ୍ତି କ ଟ୍ଟେ ଗଣିକ । ୧ ।

ସାଗର-ଗରଭେ ଲୁଚଅନ୍ତି କେତେ ମୁକୁତା
ନାଗର କରେ ବଢ଼ାଇ ଗୋଟେ ଧ'ଠା କଣିକ । ୨ ।

ବନ ମାଳତୀ ବନେ କେତେ ଫୁଟିଯାଏ ଝରି
ଗୁନ୍ଥନ୍ତି ମାଳା ମାଳୀ ଗୋଟିକୁ ବୋଟି ମଣିକ । ୩ ।

କେତେ ବୀର ଶବଢ ଲୁଚ ରହନ୍ତି ଏ ଦେଶେ
ବାଧା କବା ମୋ ନାମ ଗାଉଛି କବ ଭଣିକ । ୪ ।

( ୩୫ )

## ପ୍ରାରମ୍ଭିକ ସଂଗୀତ

ଭଦ୍ରଖ ଗୋ-ଶାଳାର ଗୋଷ୍ଠାଷ୍ଟମୀ ଉପଲକ୍ଷେ ରଚିତ

( ଦେଖିଲେ ଦେଖିଳାପରି ଥରେ ରସିକ ରାଜାଙ୍କୁ—ବୃତ୍ତେ )

ତାଳ—ଏକ

ଦେଖି ନ ଦେଖୁଛ ଭାଇ ଗୋ-ଜାତି ଦୁଃଖ ଦଶାକୁ
ମାନବ-ଜୀବନ ଧନ ଜୀପକାଗ୍ରୀ ଭରସାକୁ
ବ୍ରଜରାଜ ମଧୁବନେ
ମୁରଲୀ ମଧୁର ସ୍ୱନେ
ଥିଲେ ମତ୍ତ ଗୋ-ଚାରଣେ ପିନ୍ଧି ଗୋପାଳ ଭୂଷାକୁ । ୧ ।
ଗାଈ ଶ୍ୟାମଳୀ, ଧବଳୀ
ଚରାଇଲେ ବନମାଳୀ
ଭୁଲିଲେ ଗୋପୀ ଗୁଆଳୀ ପରାଣ ରାଧା ଯୋଷାକୁ । ୨ ।
କୌରବ ରାଜ ଗୋଧନ
ହରିଲେ ଗନ୍ଧର୍ବଗଣ
ଭୁଲିଲେ କି ସେ ସମର ଭୁଲିଲେ କି ଋଷି ଭାଷାକୁ । ୩ ।
ଯାର ରୋମକୂପେ ପୂରି
ଦେବତା ତେତିଶ କୋଟି
ତାର ପୂଜା ଅରାଧନା ଶୁଭ-ଦିବସ ନିଶାକୁ । ୪ ।
ଜାଗିଛି ଭାରତ ଏବେ
କମାଇ ମାରବ ତୁମ୍ଭେ
ତୁମ୍ଭେ କି ଜଗତ ଛଡ଼ା ପାଇବ କେଉଁ ଦିଶାକୁ । ୫ ।

( ୩୭ )

## ବଦାନ୍ୟ ସଂଗୀତ

ଗୋ-ଜାତ ହତେ ଅଜ ଅପିଛକ ହେ ଭାଇ
ଅନାଦର ଅନ୍ତଚ୍ଛିନାଶିଛ କ
ଗୋ- ମାତା ଟି ଅମର ଦେବତା ଅବତାର
ତାର ପୂଜାକୁ ଭଲ ବାସିଛ କ ( ଧ୍ରୁବ )

ନିଖିଳ ବିଶ୍ୱ ସାରା ତା'ତୁଲ ନାହିଁ ପରା
ତା ମହିମା ଅପାର ବୁଝିଛ କ ।
ତା ଲାଗି ହିନ୍ଦୁଜାତି ଅରଜ ଥିଲେ ଯୋତି
ଅଡନାଦା କଳଙ୍କି (ଆଜ) ଭରୁଛ କ । ୧ ।

ତା ସେବା ଆରାଧନା ହିନ୍ଦୁଜାତି କାମନା
ସେ ଧନେ ଧନୀ ବୋଲି ମାନୁଛ କ ।
ଦେଖି ନ ଦେଖିଲା ପରାଏ ଆଚରି
କୁଠାରେ ନିଜ ପାଦ ହାଣୁଛ କ । ୨ ।

ନିତ ନିତ ଏ ଦେଶୁ ହଜାରେ ହଜାରେ
ଜୀବନ ଦେବାଲାଗି ଯାଏ ଦରିଆ-ପାରେ
ନ ପାଏ ଶିଶୁ କ୍ଷୀର ନ ପାଏ ଧରା ଖାର
କ ଏଥି ପ୍ରତିକାର ଭାବୁଛ କ । ୩ ।

( ୩୭ )

ତାଳ-ଏକତାଳ

ନମସ୍ତେ ମା ମା ଗୋ ବାମା ଜଗନ୍ମାୟୀ
ନିଦାନ ଜ୍ଞାନ ଧ୍ୟାନ ମାନ ଆନନ୍ଦ ବିଧାୟିନୀ । ଧ୍ରୁବ ।

ପାପଦ୍ୱାର ଧ୍ୱାନ୍ତାର ପ୍ରେମାଞ୍ଜନ ସଂଗୃହୀ
ମାଧବ ଦାସୀ ମୋହିନୀ ଶଙ୍କର ଗୋ ଶୁଭକାରିଣୀ
ସୁଖ ଶାନ୍ତି ହୃଦ କାନ୍ତି ମଣ୍ଡିତା ବିଧାୟିନୀ । ୧ ।

( ୩୮ )

ରାମ୍ ପ୍ରସାଦ ସ୍ୱର: -ତାଳ-ଏକତାଲ୍

ମା'ଗୋ ତୁହି ଭବ ଦାର
ଭବାନୀ ଭବ ମୋହିନୀ ଉମା ତ୍ରିନୟନୀ ତାର । ଧ୍ରୁବ ।

ତୁ ପରା ଜଗତମାତା
ତୋ ପୁଏ ଜଗତଜନ୍ତା
କ ପାରେ ଏ ଅବସାଦ ମା କ ଶାରେ ଏ ଦୁଃଖ ଭର ।୧।

ଭେଦବାଦ ପରମାଦ
ହେଉଛନ୍ତିକ ଏ ବିଷାଦ
କ ଦୁଃଖେ ଉଡ଼ିଗଲ ମା ସେ ସୁଖ ସଂପଦ ସାର । ୨ ।

ନାହିଁ କ ମା ସେ ଅନେକ
ତମ ନାଶି ସେ ଝଲକ
(ଆଉ) ନାହିଁ କ ମା ତୋ ଶକତି ଫେଇବାକୁ ଛନ୍ଦ କାର ।୩।

( ୩୯ )

ଧନଜନ ଯୁକ୍ତା ଭାରତମାତା
ନମୋ ନମୋ ଜନନୀ ଶ୍ରୀଚରଣେ
ସନ୍ତାନ ବନ୍ଦେ ଭକ୍ତିମାନସେ
ଏସ ଚଣ୍ଡି କରୁଣା ମା ଶରଣେ । ଧ୍ରୁବ ।

ବନ୍ଧନେ ଅନ୍ତର କାତର ଅତି
ମୁକତି କାମେ ଆମେ ଦେଉଛୁ ମତି
ରହିଁ ସନ୍ତାନ ସନ୍ତତି ସଂଗ୍ରରଣେ । ୧ ।

ସଂଗୀତେ ଇଙ୍ଗିତେ ବିଷାଦ ଛାୟା
ଯାଉ ଗୋ ଦୂରେ ଘୁର ପରାଣ ମାୟା
ପୁଲକିତ ଚିତ୍ତେ ସମରେ ପଶୁଁ
ତବ ମନ୍ତ୍ରରେ ହିଂସା ଦ୍ୱନ୍ଦ୍ୱ ବିନାଶୁ

ଭେଦ ଭୁଙ୍ଗ ଗିରି ସିନ୍ଧୁ ସନ୍ତରଣେ
ନମୋ ନମୋ ଜନନୀ ଶ୍ରୀଚରଣେ । ୨ ।

( ୪୦ )

## ଗଜଲ

କଏ ଜଗାଇଦେଲା ବଜାଇଦେଲା ଏ ଜାତି ପ୍ରାଣେ
ଅଭିନବ ବାଂଶରୀ
ମୋହନ ସୁଧା ହରଲ କ୍ଷୁଧା;
ଧନ ଜନ ମାନ ମାୟା ନେଲା ପାଶୋର । ଧ୍ରୁବ

କେଉଁ ଦେବତା ନନ୍ଦନବନୁ
ଅମିୟଧାର ଢାଳି ଦୂର ଗଗନୁ
ଜେଗାଇ ଦେଲା ମତାଇଦେଲା
ସ୍ୱାଧୀନତାରେ ଯୁବା ଅବା କିଶୋରୀ । ୧ ।

ଅଜଣା ସ୍ୱରେ ଅଜଣା ତାନେ
ଅଦେଖା ବୀରେ ମଜାଇ ପ୍ରାଣେ
ମୃଚ୍ଛ ଧନେ ନୟନେ ଥୋଇ
ମରଣ ଜ୍ୱାଲା ହେଲେ ଦେଲା ବିଶୋରି ।୨।

( ୪୧ )

ଗଉରବ ବାସନା ମା ଟଗୋ ଶୋଭନ ତନୁ ଲତା
ସାଜେ ମଞ୍ଜୁଳ କାନ୍ତି ଝଲମଲ ଝଲମଲ
ଗଉରବ ବାସନା ମା'ଟଗୋ ( ଧ୍ରୁବ )

ନୟନ ପାତି ତାନେ—ଜାତ ହୃଦୟ ସ୍ୱର୍ଣ୍ଣ ଶାଣେ
ତା'ର କାନ୍ତି କୁସୁମ ଅଙ୍ଗେ ଟବ ଅଶିଷ ମାହାରକା
ଝଲମଲ ଝଲମଲ ଗଉରବ ବାସନା ମା'ଗୋ । ୧ ।

ଶିରେ ଗୋ ଶିରେ ଟଗୋ ମହାସ୍ଥାନ
ନିକେତନ ଗିରିବନ
ଅଞ୍ଚଳ ବଉଦ୍ଧଗ—ଲଗି ଚଞ୍ଚଳ ଚଉ ଧଗ
ପାଦେ ପ୍ଲାବନୀ କମଳା ମହାସିନ୍ଧୁ ନୀରେ
ଝଲମଲ ଝଲମଲ ଗଉରବ ବାସନା ଗୋ । ୨ ।
୧୨. ୧. ୭୫

( ୪୨ )

ସାନ୍ଧ୍ୟ ନୀଳ-ମେଘେ ସ୍ୱର୍ଣ୍ଣର ବିଦ୍ୟୁତଲତା
ମଞ୍ଜୁଳ ବକ୍ରିମ ଘଟଗ ଦୂରେ ଯାଏ ସରିତା ( ଧ୍ରୁବ )

ବିନ୍ଧ୍ୟ ତୁଙ୍ଗ ଗିରି ଶିଖରେ ଶୋଭି
ସାଜେ ଅଭ୍ରଗଣି ଶୁଭ୍ର ଛଟା
କ୍ଷଣେ ଅନ୍ତର୍ଦ୍ଧାନେ ଶଶୀ ଚଞ୍ଚଳତା । ୧ ।

ଘନ ତମ ବାସେ ବିଦ୍ୟୁ ଜ୍ୟୋତି
ଧ୍ୱନି କଂପନରେ କି ଝଟ ଝଟି
କେକୀ ରଙ୍ଗେ ନାଚେ ଟେକି ପୁଚ୍ଛ ସୁଷମା
ଚୁହେଁ ତୃଷିତେ ମେଲି ଆଖି ଚକୋରୀ ବାମା
ଗୁରୁ-ଗର୍ଜ୍ଜନେ କୁଞ୍ଜନ ଦିଗଭ୍ରୂଲତା । ୨ ।

( ୪୩ )

ପ୍ରେମେ ଭୁବନ ଭୁଲାଇଯାଉ-ବୃନ୍ଦେ

( ନିଖିଳ ଉତ୍କଳ ନେତା ସମ୍ମିଳନୀ କଟକ ଅଧିବେଶନର ଗୀତ )

ସତେ ପୂରିବ କି ସେହି ଆଶା
ଉତ୍କଳ ଜୀବନ ମାନ ପରାଣ ଭବ ଭରସା । ଧ୍ରୁବ ।

ଯାର ଗଉରବ ଗୁଣ ଗରିମା
କଳା କଉଶଳ ଶିଳ୍ପ ସୁଷମା
ଗାଉଛି ଜଗତ ସେ ଜାତିର ଦୁଃଖ ଅପାର ନିରାଶା ।୧।

ଯାର ମହିମା ଗାଉଛି ସାଗର
ଘର ନାହିଁ ବୁଲିବାକୁ ନିକର
ନିଜ ଘରେ ପର ପରଘରେ ସହେ ଲାଞ୍ଛନା କି କୁଭାଷା । ୨ ।

ଆଜି ଆଶାର ଆଲୋକ ଜୀବନେ
ଖେଳେ ଉତ୍କଳ ଭବନେ ଭବନେ
ସୁଖ ଶଶୀ ଉଦେ ହେଲାକି ଗଗନେ ତୁଟିବ କି ତମସା । ୩ ।

( ୪୪ )

## ଗଜଲ-କଓ୍ୱାଲି

ଫଗୁଣ ମାସେ ଫଗୁ ନିବାସେ ଋତୁର ରାଜା ରାଜେ ଗୋ
ମଳୟ ରଥେ ଅଗୁଆ ପଥେ ଋତୁର ପିକ ସାଜେ ଗୋ

ବୀଣାପାଣି ବର ବାଣୀ ସାଧନା
ଆମ୍ଭ ଜୀବନ ଏକା କାମନା
ସଫଳ ଆଜ ସଫଳ ଆଜ ଶ୍ରମ ବରଷେ ମନ ହରଷେ
ପରାଣେ ବୀଣା ବାଜେ ଗୋ । ୧ ।

ଆମରି ଦେଶ ସୀମା ନିର୍ଦ୍ଦେଶ
ଛିନ୍ନ ଅଂଗର ସୁଷମା ବେଶ
କରିନ୍ତୁ ଯେତ୍ନ ଆସିଛ ସେତ୍ନ ଅତିଥିବର ରାଜେ ଗୋ । ୨ ।

ଭକତମାଳା ପିନ୍ଧାଅ ଗଳେ
ସେବ ଅତିଥି ପୀରତି ଭେଳେ
ଦେଖ ହେ ଆସି, ଦେଖ ହେ ଆସି
ତା ଦରଶନେ, ତୁଷାର ବନେ
ଲୁଚୁଇ ଶୀତ ଲାଜେ ଗୋ । ୩ ।

( ୪୫ )

ରାଗ-ଖମ୍ବାଜ, ତାଳ-ଏକତାଲ

ଆସ ସରବେ ଏ ଶୁଭ ପରବେ ଭସାଇ ସଂଗୀତ ଧାର
ଭସାଇ ଦିଅ ହେ ଆନନ୍ଦର ଧାର ଯେସନେ ଶ୍ରାବଣ ଧାର ।

ଶ୍ରମକର ଫଳ ଲଭିଛୁ ଯେ ଯେତେ
ଆନନ୍ଦେ ସେ ଫଳ ଭୋଗିବଟି ସେତେ
ଯାତନା ସାଧନା ଶ୍ରମ ବିନା କେହି ପାଇଛୁ କି ସୁଖସାର । ୧ ।

ଏ ବାଣୀ ଉକ୍ତିଲେ ଉଲ୍ଲାସ ହରଷ
ବାଳକ ବଦନ ଦିଶଇ ସରସ
ଆଶାର ତପନ କରଣେ ସୁଷମା ବିକାଶଇ ବାସ ସାର । ୨ ।

( ୪୭ )

# ପୁରସ୍କାର ବିତରଣ ସଭା ଉପଲକ୍ଷେ

ରାଗ ଶ୍ୟାମକଲ୍ୟାଣୀ, ତାଳ-ଦାଦରା

ମଧୁର ଗାନ ଗାଇବାରେ, ଜୟଗୀତ ଗାଇ ଖେଳିବାରେ
ସୁଷମ କାବ୍ୟ ଉପବନୁଁ ସୁମନେ ସୁମନ ତୋଳିବାରେ
ସଂଗୀତ ସୁଧା ବରଷିବା, ଅତୋପ୍ସୀ ପ୍ରାଣ ପରଶିବା
ବାଣୀ ନେବ ତା ଅସ୍ରଧନା, ମନମନ୍ଦିରେ ମିଳିବାରେ ।୧।

ବନ୍ଧୁ ଚରଣେ ଦେଇ ମତ, ମଥା ନଇଁବା ଗୁରୁକତ
ଶକତ ସଂପଦ ମାଗିନେବା ଭକତ ଚନ୍ଦନ ତୋଳିବାରେ ।୨।

ଜଗତ ଜନ ସେବା ବିଧି, ଜୀବନେ ଧ୍ୟାନ ମହାସିଦ୍ଧି
ସେ ସିଦ୍ଧି ସାଧନା ବଳେ ଧର୍ମ ଗୁପତ ଝଣିକୁ ଖୋଳିବାରେ ।୩

( ୪୭ )

ତାଳ-ଦାଦରା

ତାନେ ତାନେ ମାନେ ମାନେ କ ସୁରେ ମାନସୀ ଗାଏ
ପରାଣ ଅବେଗରେ କ ଭାବେ ତଟିନୀ ଧାଏଁ ।

ଶାରଦ ଗଗନେ ଶଶୀ, କା' ଲଗି ସୁଖେ ହସି
କା ପ୍ରେମେ ମେଘେ ମିଶି ଲୁଚକାଳି ଖେଳଯାଏ ।

## ( ୪୮ )

### ମିଶ୍ର-ଦାଦରା

ଆସ ମିଶି ଫୁଲ ମନେ ଗାଇବା ଗୌରବ ଗାନେ
ଉଠୁ ହସି ରକା ଶଶୀ ଦୁଃଖ ଅମା ଅବସାନେ
ଉଠୁରେ ଗମ୍ଭୀରେ ବାଜି, ହୃଦୟ ସଙ୍ଗୀତ ରାଜି
ପରାଣେ ପରାଣ ମିଶି ଝଙ୍କାର ଅମୀୟ ଛାନେ । ୧ ।

ଆକାଶ ବଳଦ ଭରା ଅଜ୍ଞାନ ବାଦଲ ଘେର
କେଜାଣି କି ଝଲସିବ କେତେ ବିଜୁଳୀ ମାର
ହସିବ ଫୁଲରେ ଧରା, ମେଲି ଆନନ୍ଦ ପସରା
ହସିବେ ଦେଶ ସମ୍ବୃଦ୍ଧ ସାଗର ଚିରବାନନେ । ୨ ।

( ୪୯ )

ଆସ ଗୋ ଆସ ଗୋ କୁନ୍ତଳା ଦେବୀ, ଆସ ଆଜ ଶୁଭବାସରେ
ଅସିବାଦେ ବସିଯାଅ ତବ ଲାଞ୍ଛିତ ହୃଦ ପାଶରେ

ତୁମ୍ଭେ ପରା ବୀର ନାରୀ, ଉତ୍କଳର ଆଶା ସାର
ତପୋବନ ଭରତୀ ଗୋ, କବିତା ବନ ବହାର
ଉତ୍କଳ ରମଣୀ ମଣି ପ୍ରାନ୍ତ ଜନର ସରଣି,
ରଖିଛ ଜାତର ଟେକ ପ୍ରବାସେ ସ୍ୱଦେଶ ମଣି
ଶୁଣାଅ ଗୋ ମୁକ୍ତ ଗାଥା ଆଜ ତବ ଭାଷାରେ । ୧ ।

ଜାତୀୟ ଲେଖା ଛନ୍ଦେ ଛନ୍ଦ କବିତା ସୁମନ ଗନ୍ଧେ
ସୌରଭମୟ କରିଛ ପରଶି ଉତ୍କଳ ପ୍ରାଣ ରନ୍ଧ୍ରେ
ଗାଇଲେ ଯେ ଜାତି କର୍ମୀ ବୀର, କବି ଅଭିମନ୍ୟୁ ଉପେନ୍ଦ୍ରବୀର
କାହିଁ ଗୋ ଗଲ କାହିଁ ଗୋ
ସେ ଜାତି ଶିଳ୍ପ ସେ ଜାତି ଶୌର୍ଯ୍ୟ, ନାହିଁ ସେ ସଂପଦ ନାହିଁ ଗୋ
ହଜିବ ନାହିଁକି ସତେ ସେ ସଂପଦ ସୂର୍ଯ୍ୟ ଆକାଶରେ । ୨ ।

( ୪୦ )

ରାଗ-ଭୈରବୀ, ତାଳ-ତେଡ଼ା

ନିରାଶା ବାରିଧିରେ ଅପାର ସୁନା ତରୀ ଭସି ଆସୁଛୁ ଏକ ବେଗରେ
ଅବସାଦ ପାଉଁଶ ଘନ ଶୟନେ ସୁଖ ସପନ ଦେଖେ ଆଖି ଆଗରେ

ଯାତନା ଅପମାନ ଏ ଜାତି କଣ୍ଟାବଣେ
ସମାନ ଧାଡ଼ିରେ ଆଶି ଶିଳା ମିଳେ କ କ୍ଷଣେ
ଅସହ୍ୟ ଦୁଃଖ ରାଶି ରୁକ୍ଷ ମରୁ ପ୍ରାନ୍ତରେ ଗୌରବ ଗୋଲାପଟି
ସଜାଗରେ । ୧ ।

ନିଜର ଅଧିକାର ନିଜେ କର ବେଭାର
ସ୍ୱାଲମ୍ବ ଶାସନର ମୂଳମନ୍ତ୍ରଟି ସାର
ଏ ଶାସନର ଭିତ୍ତି ପରସେବା ଅବର, ନିଷ୍କାମ ପ୍ରୀତି ଅନୁରାଗରେ ।

ଏ ବେଭାର ପାଇଁକି ଅଳ ଶୃଙ୍ଖଳଗଣେ
ମୁଁ ଭୁଲା ଶୁଦ୍ଧକ୍ଷଣେ ନୂଆଧର ଭବନେ
ନୂଆ ଅଚିରେ ଦେବେ ସୁବାସିତ ବରଷି ସାଧାରଣଙ୍କ
ସରାଗରେ । ୩ ।

( ୫୧ )

ରାଗ—ଭୈରବୀ, ତାଳ—ଏକତାଳ

ଜୀବନେ କି ସୁଖ ଯଦି ଘାରେ ଚିର ଯାତନା
କିବା ଆଶା କିବା କାମନା
ବିପଦେ କି ସନ୍ତାପ କିବା ପୁଣ୍ୟ କି ପାପ
ସଂପଦେ କି ଆନନ୍ଦରସ କମ୍ପା ହତ ଚେତନା
କିବା ଆଶା କିବା କାମନା

ଗ୍ରୀଷ୍ମେ କିବା ହେମନ୍ତେ
ଶୀତେ କିବା ବସନ୍ତେ
ଋତୁ ସୁଖ କିବା ଯେତେ ଚିର ବରଷା
କିବା ଆଶା କିବା କାମନା । ୨ ।

—o—

( ୫୨ )

( ଉତ୍କଳମଣି ଗୋପବନ୍ଧୁଙ୍କ ଶ୍ରାଦ୍ଧ ଉପଲକ୍ଷେ )

ନବ-ଯୁଗର ନବୀନ ଯୋଗୀ ରହିଛ କାହିଁ ଦେବ ହେ
କେଉଁ ଅଜଣା ରାଇଜେ ରହି କେଉଁ ଦେବତା ସେବ ହେ

କେଉଁ ସୁଦୂର ଗଗନେ ଥାଇ
ଏ ଦେଶ ଦୁଃଖ ଦିଅ ଅନାଇଁ
ଥିଲା ଯେସନ ଅଛି ତେସନ,
ତା ଅବସାନ କେତେଦିନକେ ହେବ ହେ ।

ନିଦାଘ ଶେଷେ ବରଷା ମାସେ, ଘୁଞ୍ଚୁଛି ଦାରୁଣ ତାପ
ଘୁଞ୍ଚୁନ ନାହିଁ ଏ ଦେଶ ବକ୍ଷୁ ଯେତେ ଅମିତ ପାପ
ତୁମ୍ଭର ସ୍ମୃତି ତୁମ୍ଭ ପ୍ରତିଭା, ଦେବ ଜାତିକୁ ନବୀନ ଆଭା
ତୁମ୍ଭ ଆଶିଷ ତୁମ୍ଭ ଆଶିଷ ଉତ୍କଳ ପ୍ରାଣେ ନବ ଶକତି ଦେବ ହେ ।

— ୦ —

( ୫୩ )

ରାଗ—ବେହାଗ, ତାଳ—ଝାମ୍ପ ତାଳ

ସ୍ୱାଧୀନତା ପିପାସା, ଲଭିଛୁ କେବେ କି ନାହିଁ
ଜାଗିଛୁ ଯେବେ ଥରେ ଲଭିଛୁ କେବେ କି କାହିଁ । ୧ ।
କେତେ ସମର ଲଗିଛୁ ଭୀମ ଭୈରବ ନାଦେ
ଜୟ ପରାଜୟ ତା ବରାବର ସତତେ ଥାଇ । ୨ ।
କେତେ ନାମିକା ଅନାମିକା ବୀରେ ଯାନ୍ତି ମରି
ଲଭଇ ଅମର ମନେ ଜୟୀ ଚିରଦିନ ପାଇଁ । ୩ ।
ବନ୍ଦୀ-ଭବନ କାହା ଭାଗ୍ୟେ ଫାଶି ଅବା ଶୂଳୀ
ଲୌହ କା ଗଳା-ହାର କରେ କା ପ୍ରାଣ ଯାଇ । ୪ ।
ନିର୍ବାସିତ ଯେତେକ ଲେଟକ କଥକ ସେ
ବିଦ୍ରୋହୀ ବୋଲି ନାଗରିକ ଦାବୀ ଆଉ ନାହିଁ । ୫ ।
ସୁପ୍ତ ବା ଲୁପ୍ତ ହୋଇ ଶକତି ଜଗତ ଜାଗେ
ଯୁବକ ନୟନେ ନିରାଶା ତନ୍ଦ୍ରାଦିଗ ଚାହିଁ । ୬ ।
ତଥାପି ସ୍ୱାଧୀନତା ଯାଇ ନାହିଁ ଯାଇ ନାହିଁ
ଅଣ୍ଟ ପୁରୀ ପ୍ରବେଶ କହନାହିଁ କରନାହିଁ । ୭ ।
ଯାଏ ଯେବେ ତାହାର ସ୍ୱାଧୀନତା ଦେଖୁ ଦେଖେ
ଏକେ ଦ୍ୱିତୀୟ ବାଞ୍ଛିତୀୟ କେବେ ଯାଏ ନାହିଁ । ୮ ।
ଯାଏ ସବୁରି ଶେଷେ ତାହାର ଦେଶକୁ ଯେବେ
ବଞ୍ଚିଯାଏ ଯାବତ ଶେଷ ଜଣକ ନ ଯାଇ । ୯ ।

—୦—

( ୫୪ )

ସ୍ୱରାଜ୍ୟ ସ୍ୱରୂପ ବେଗେ ଆସେ ଚୂଲରେ
ସ୍ୱାଧୀନ ହେବା ଆମେ ହେଇ ଯିବ କାଲରେ
ଆମେ ସବୁ ମନ୍ତ୍ରୀ ହେବା ଦେଶୀ-ଲୋକ ଦଣ୍ଡ ବଣ୍ଡ
ସିଭିଲପ୍ଲାନ୍ ସେକ୍ରେଟାରୀ ଆମ ଦଳକୁ ଜଣେକ ପିଣ୍ଡ
(ନ ମାନନ୍ତୁ ଆମକୁ ପଚରେ) ମୋଟା ଦରମା ନେବା ମାସରେ । ୧ ।
ହାକମ ହୁକୁମା ଯେତେ ବଡ଼ ଅଫିସର
ପୋଲିସ, ଇଞ୍ଜିନିୟର, ଜଜ୍ ଅବା କମିସନର
ଡେପୋଟି କଲେକ୍ଟର ତ ଆମ ହୁକୁମରେ ଖଡ଼ା
ବାହାଃ ବାହାଃ ଅଧିକାର ବାହାଃ ବଲ ହାରରେ । ୨ ।
ବାନ୍ଧ କରିଦେବା ଆମେ ଯେତେବଡ଼ ନଈବଢ଼ି
ଦେଶରେ ନହେବ ଆଉ ଦୁର୍ଭିକ୍ଷ ମାରୁ ମରୁଡ଼ି ।
ଦେଶ ଲାଗି ବେଶୀ ଟଙ୍କା ବଜେଟ୍ କରିଦେବା ବାଣ୍ଟି
ଅବଶେଷ ଏତିକ ଖାଲି ଲାଟ୍ ସବୁ ନେବେ କାଟି
( ଆମ ହାତେ ଲାଟ୍ କେବେ ନ ଦେବେଟି ସବୁ କାଟି )
ଜଣ ପିଣ୍ଡ ସାତ ଆଠ ଲାଟ୍-ସଭା ମେମ୍ବର ହେବା
ଦେଶ-ସେବୀ ଆମେ ଫାଷ୍ଟକ୍ଲାସ ଗସ୍ତ ଖରଚ୍ଚ ନେବା
ଆମେ ଯାହା ପାଶ୍ କରିବା ସେହୁ ଆଇନ ହେବ ଜାରି
ନଥିବେ ବାଧା ଦେବାକୁ କେହି ମେମ୍ବର ସରକାରି
ହାତର ପାଞ୍ଚ କଟକଣାଟି ରହିଗଲା ଖାଲିରେ । ୩ ।
ଗଡ଼ଜାତ ରାଜା ଆମ ସଭାରେ ବସିବେ ଆସି
ତାଙ୍କ ଶାସନ ବିଷୟରେ ଆମେ କହିବା ସାହସି
ସବୁ ଧରମ ଜାତିଙ୍କୁ କରିବାକୁ ଏକ ମେଳ
କରିଦେଲେ ଭଗବାନ୍ ହୋଇ ଆହା କି ବ୍ୟାକୁଳ
ସେ ଉପକାର କି ପାରିବା ଭୁଲିରେ ।

—○—

( ୫୫ )

ମା ଆମର ଭାରତଭୂଇଁରେ ହାୟ ହାୟ ହାୟ ଆଜ କ ହେଲ ହେଲରେ
ସୁନାମାଟି ସୁନା ହିନ୍ଦୁସ୍ଥାନ, କାହିଁ ତା ସୁନା ମୂଲ୍ୟବାନ ତାକୁ କଏସେ
ନେଲରେ ।

ମା ଆମର ସୀତା ସ୍ୱରୂପା
କେଉଁ ଅମିତ ଦଶାନନ ତାକୁ ଏ ଦଶା ଦେଲରେ । ୧ ।

ମା ଆମର ପାଞ୍ଚାଳୀ ପରି
ପଞ୍ଚପତି ବୀର ଜାୟା ବୀର ନାରୀ ସେପରି

ପଞ୍ଚନଦୀ ସିଂହ ଶାବକେ, କେଉଁ ମନ୍ତ୍ରେ ବୀର୍ଯ୍ୟ ହୀନ
ସୁପ୍ତ କଲରେ । ୨ ।

ଗାଁ ଆମର ଶ୍ମଶାନ ହେଲା
ପୂର୍ଣ୍ଣ ପ୍ରାଣ ପୂର୍ଣ୍ଣ ଭୂମି ଶୂନ୍ୟ କେ କଲା

ଘିଅ ମାଛ ସମାଜ ଗତ, ଚୂର୍ଣ୍ଣ ଆଜ ପୂର୍ଣ୍ଣ ସ୍ୱାର୍ଥେ
କ୍ଷୁଣ୍ଣ ହେଲରେ । ୩ ।

( ୫୭ )

ରାଗ-ଅସାବରୀ, ତାଳ-ଏକତାଳ

ଜଗତଜନର ପୂଜା ନେବା ଲାଗି କାହିଁ ଗୋ ବାସନା ଜଗତଜନନୀ
ଜଗତ ଈଶ୍ୱର ରାମ ରଘୁବୀର ପୂଜିଥିଲେ ପରା ପଦ୍ମର ପାବନୀ

ପଶୁପତି ଗତି ବାହନ ପଶୁ ଗୋ
କି ଦୋଷେ କି ରୋଷେ ସେ ପଶୁ ନାଶୁ ଗୋ
ରିପୁ ରୂପୀ ପଶୁ ବଳେ ବଳାଧରୀ ସେ ପଶୁ ବଳକୁ ନଦେଇ ସହଣୀ

ବୀଣାପାଣି ପରା ତବ ସଂଗିନୀ ଗୋ, ବୀଣାର ସଂଗୀତ କାହିଁ
ଖାଲି ବୀଣାଟି ଗୋ ବାଇବ କାହିଁରେ ବୀଣାର ତାର ଯେ ନାହିଁ ।

ଦିଅ ମା ଶକତି ତାର ସେ ଯନ୍ତ୍ରରେ
ଝଂକାର ଉଠୁ ଗୋ ତୁମ୍ଭର ମନ୍ତ୍ରରେ
ଦାଇବ ଗାଇବ ଉତ୍କଳର ଗୀତ ଉନ୍ମାଦନା ଭରା ବନ୍ଦିତ ଅବନୀ ।

( ୭ )

ରାଗ—ମିଶ୍ର, ତାଳ—ଫେରତା

ଶାରଦ ଗଗନ କି ମଳିମା ଭରି
ବହେ ଗୋ ସମୀରଣ ଫେଫାଲି ହରି

ସପନେ ସୁଷମା ଗ୍ରଥି ନୟନେ ଗୋ ଯାଏ ଭାସି
ଜାଗରଣେ କି ଶୋଭା ମାନସ ହରି

ଲୁଚିଯାଏ ଶଶୀ ହସି ତାରକା ମେଳେ
ବାଦେ କୋଳେ ଲୁଚ କି ଖେଳ ଖେଳେ

କୁଳୁକୁଳୁ ନାଦେ ନଦୀ ଗାଏ କି ନିରବଧି
ଶିଶିର ନୀର ନୟନୁ ଲୁହାଏ ଧରା ।

( ୫୮ )

ଉଦ୍ଧଖ ନଗା-ଶାଳା ଗୋଷ୍ଠାଷ୍ଟମୀ ଓ ବାର୍ଷିକ ଉତ୍ସବ ଉପଲକ୍ଷେ

ରାଗ--ଆଶାବରୀ, ତାଳ—ଏକତାଳ

ଅସିଛକି ଅଜି ହରଷେ ହରଷେ ମନର ଉଲ୍ଲାସେ ଅସିଛ କି
ନାଶିଛ କି ମନୁ ଉଦାସୀ ଭାବନା, ମୋ ଜାତି ବେଦନା ନାଶିଛ କି

ଉପକାରୀ ସଦା ଯେ ଜାତି ଜଗତେ
ତା ବିନା ସେ ପାପ ଅରଜ ନାହିଁତେ
ସେ ଜାତିର ହିତ-କାମନା ସାଧନା ଉପାସନା ଭଲ ବାଛୁଛ କି ।

ଉଇଁଲେ ତପନ ଯୁଝିଯାଏ ଘନ
ଅନ୍ଧାର ହୁଏ ପାହାନ୍ତ
କନକ-ବରଣୀ ହସେ ଉଷା-ରାଣୀ ଫୁଟିଉଠଇ ତା କାନ୍ତ ।

(ଅଜି) ଉଦ୍ଧଖ ଗଗନେ ଉଇଁଛୁ ଭାସ୍କର
ଗୋ- ହିତେ ଆଲୋକ କରେ ପରସ୍ପର
ଭାନୁ ସମ ସେହୁ ସଦା ଦାନ-ବୀର (ତାଙ୍କୁ)
ସାନୁନୟେ ମାଗି ଆସିଛ କି ।

—୦—

( ୪୯ )

ମୋ ଜାତି ଏଡ଼େ ଗର୍ବସ୍ଥାନ
ହେବ କି ମା ଚିର-ପରାଧୀନ
ଦାସତ୍ୱ ଲୌହ ଶୃଙ୍ଖଳେ ବନ୍ଧାଥିବ କି ଆଜୀବନ

ଅନଙ୍ଗ ମରକତ କେଶରୀ
ବୀର ହେ ହେବ ଆଉ କେ ସରି
ଛବଢା କାବ୍ୟ କାସାରେ କଞ୍ଜ ହେ ଭଞ୍ଜ ରଞ୍ଜନ ।

କୋଣାର୍କ କାରିଗର ଧରମା
ବିଶ୍ୱର ଶିଶୁ ଯଣେଜନମା
କାହିଁରେ କାହିଁ ସେ କଳା-ବୃତ୍ତିସ୍ତ ଫେରିବ ନାହିଁକି ସେ ଦିନ ।

ଏ ଯୁଗ ଯୋଗୀ ଗୋପବନ୍ଧୁ
ଉତ୍କଳ ଦୀନଜନ ବନ୍ଧୁ
ବିଦ୍ୱାନ ବୀର ମଧୁସୂଦନ ବଦାନ୍ୟ ସାହସେ ସ୍ୱାଧୀନ

ଜାଗିଛି ପଞ୍ଜାବ, ଅଙ୍ଗ
ଜାଗିଛି ବଙ୍ଗ, ତେଲିଙ୍ଗ
ଜାଗିବ ନାହିଁକି ମୋ ଦେଶ ହୋଇଥିବ କି ଉଦାସୀନ ।

( ୫୦ )

ଜଳ ଭଙ୍ଗିଲା ଆମ ବେଳକୁ
ସାରିଦେଲା କର ପଙ୍ଗୁ କାଳ କାଳକୁ

ଲୁଗାକଳ ବଂସି ଦେଶୀ ବା ବିଦେଶୀ
ମାରିଦେଲା ଆଁମ ତନ୍ତୀ କୂଳକୁ ।

(ଆଜ) ବାଉଁଶ ଚୁଙ୍ଗାର ଢାକା ଶାଢ଼ୀ ନାହିଁ ଅରହଟ ଗଲା
ଘଡ଼ ତଳକୁ ।

ଗୁଉଳ କଳର ଫସକା ଗୁଉଳ
ଲୁଇ ଦେଲା ସେଗ ଗଛ ମୂଳକୁ
କୁଟୁଣୀ ବଳିଲେ କୁଟୁଣୀ ହୋଇଣ
ଢିଙ୍କି ଶର କଲେ ଚୂଲି ଜାଳକୁ ।

ମଠର ରେଳରେ ଚଢ଼ିବା ମଉଜ
ସାରିଦେଲା ଗୁଳିଯିବା ବଳକୁ
ଯୋଢା ଚଢ଼ା ଗୁଡ଼ ପା ଗାଡ଼ି ଚଢ଼ିଲେ ଅକ୍କାମାଢ଼େ
ପାଦେ ଯିବା ବେଳକୁ ।

( ୭୧ )

ମହିମା କହିବେ କି ସେ ଗୋକୁଳ ଚନ୍ଦ୍ରମନ୍ଦର ଧୀର
ମିଳାଇଛି ଜାହ୍ନବୀ ପାବନୀ ଯମୁନା ସଂଗମେ ସ୍ୱରସ୍ୱତୀ ମା
ସନକ ଜନକ ଯୋଗୀ ଯୁଗ ଯୁଗ ସାରା
ଶିବ ନାରଦାଦ ଯା ତତ୍ତ୍ୱ ଆଣି ଧାରା

ବୀର ପରାକ୍ରମ କଂସ ବୀରାଧୀଶର ପ୍ରାଣ ହାରା ।
ପରମ ପୁରୁଷ ପରଶେ ଯା
ପୂତନା ଚେତନା ହାଇଲେ ହାୟ
ସରସେ ବରଷେ ଅମୃତ ଧାରା ମୂର୍ଚ୍ଛନାଦେ
ଉନ୍ମାଦେ ତନୁମନ ହରା ଗୋପୀକୁଳ

## ( ୭୨ )

ଜାଗ ହେ ଜାଗ ହେ ଜାଗ ପଲ୍ଲୀବାସୀ, ଜାଗ ଶ୍ରମିକ ଜାଗ ହେ
ଜାଗ ହେ କୃଷକ, ଜଗତ ପୋଷକ ବଞ୍ଚିବାକୁ ନିଜେ ଲାଗ ହେ

ଜଗତେ ସବୁରି ସମ ଅଧିକାର କେ ବଡ଼ କେ ସାନ କେ ପ୍ରଭୁ କାହାର
କେ କାହାର ସାଧୁ କେ କାହା ଖାତକ କିଏ ଦେବ କାକୁ ଭାଗ ହେ ।୧।

ଆପଣା ଗରଜ କରଣେ ଫାନ୍ଦ, ଧରମ ନାମରେ ନିୟମକୁ ବାନ୍ଧି
ପାପ ପୁଣ୍ୟ କହି ଭୁଲାଇ ଦିଅନ୍ତି [ସେଠ] ଭୁଲିବା ଏକ ବାଗ ହେ ।୨।

ବିଧାତା ଲିଖନ ଶୁଣିଥାଅ କାନେ ଲେଖିବା କେହି କି ଦେଖିଛ ନୟନେ
ଭାଗ୍ୟ ବୋଲି ଆନ ଶବଦ କୁହୁକ ଅବନତି କଲା ଜାଗ ହେ ।୩।

ସଂପାଦିବା ଲାଗି ଧନୀଙ୍କର ଧନ
ଶାସନ ଯନ୍ତ୍ର କଲେ ସରଜନ
ଅନୀତି ଶାସନ ଅନୀତି ବିଧାନ ସବୁ ଅନୀତିକୁ ଭାଙ୍ଗ ହେ ।୪।

( ୭୩ )

ଭବାନୀ ଗୌରୀ ଶ୍ୟାମା ଶମ୍ଭୁବାମା ଜମ୍ବୁମୋହିନୀ
ବିଧାୟିନୀ ଜ୍ଞାନ ଧ୍ୟାନ ଦୈନ୍ୟ ଦୁର୍ଗତି ଦୁଃଖ ନାଶିନୀ ।

ଶ୍ୟାମା ଭବ-ଭୟ ହାରିଣୀ, ଉମା ତ୍ରିନେତ୍ର ଧାରିଣୀ
ଜଗଜ୍ଜନପାଳିନୀ କାଳୀ କାଳିକା କାତ୍ୟାୟନୀ

ନୃମୁଣ୍ଡ ମାଳିନୀ ଚଣ୍ଡୀ-ଚାମୁଣ୍ଡୀ ସଙ୍ଗେ ସଙ୍ଗିନୀ ।
ବିଳାସିନୀ ରକ୍ତ ପାନେ ଭୂଟ୍ବଶାଠନ ସମର ରଙ୍ଗିନୀ ।

ଲେଲିହାନ ଜିହ୍ୱା ରଟଙ୍ଗ ରଙ୍ଗ ଅକ୍ଷି ସାକ୍ଷୀ ନାଟିନୀ
ଭୁଜଙ୍ଗୀ ସଙ୍ଗ ଭଗିନୀ, ଅମ୍ବିକେ ଅମ୍ବାଳିକେ ଶୂଳପାଣି ପାଦେ ପାବନୀ

( ୭୪ )

ନିଆଁ ଝଳ ମାର ବଲ ମୁଁ ହାୟୁ ହାୟୁରେ
ଲେଖିବ ପଢ଼ିବ ଗୁଣିବ ମୁଁ, ଗୁରୁଠୁଁ ପୁରାଣ ଶୁଣିବ ମୁଁ
ନାମ ଲେଖାଇ ହେଲ ହରବର ଝକ୍ମାରି ।

ରୋଗୀ ଔଷଧ ଘରେ ଘରେ ଦିଅ—କିଏ ମଲ ତା ମଡ଼ା ଏଠେ
କଲବଲ ଝକ୍ମାରି ।

ଡେଣ୍ଡା ବୋହୁ ବୋହୁ କଲ ନାଲକୁ—ଭେଣ୍ଡା ଝୋଟା
ସାରିଲ ମୋ ବଳକୁ
ଅରୁଆ ଗୃହଳ ପାଣିକଖାରୁ, ଘାଣ୍ଟିଆ ଛଅଣ କୁଣ୍ଡିଆ ସାରୁ
ଦରଶନ ନାହିଁ ମାଛ ଶୁଖୁଆର, ଝକ୍ମାରି ।

( ୭୫ )

## ଭଜନ

ନାରାୟଣ ଭବ ମୋହନ ଜଗତ-ଜୀବନ ଦାୟୀ
ମାଧବ ହର ଶୂନ୍ୟ ବିହାରୀ ଗରୁଡ଼ ବାହନ-ବାହା
ଯାଦବ ସଦା ଜାଗ୍ରତ ଶେଷେ ସିନ୍ଧୁ ଶୟନ-ଶାୟୀ । ୧ ।

ରାଘବ ବୀର ରଞ୍ଜନ ବେଶେ ସୁନ୍ଦର ଶ୍ୟାମ ଦେହୀ
ମାଧବ ଦୁଃଖ ତାପ ହରଣ ଶରଣ ସଂପଦ-ଦାୟୀ । ୨ ।

ବାମନ ବଳି ଦାନ-ଗ୍ରହୀତା ମାୟା ଚରଣ ଲାଇ
ସାଧନ ଧନ କ୍ରେ ମାଗେ ରାଜୀବ-ପଦ ଧ୍ୟାୟୀ । ୩ ।

( ୭୭ )

( ତୁମେ ) ଭାବୁଛ ସିନା ବଡ଼ ଆପେ ମନକୁ
( ତେଣେ ) ଜଗତ ଜାଣୁଛନ୍ତି ତୁମ ଧନ ଗୁଣକୁ ।
ନିଜ ଦେଶେ ପ୍ରଭୁପଣ ଦେଖାଅ ହେ ଯେସନ
ବିଳତେ ତୁମ୍ଭର ନାମ—Slavish nation
ବିଦେଶରେ ଘୃଣା ତମ ହଜୁ-ପଣକୁ ।
ସୁନାର ଭାରତ ବୋଲି କରୁଥାଅ ଗର୍ବ
ଦାନା କନା ବିନା ବୁଲୁଥାଅ ହୋଇ ସର୍ବ
ନିଜ ହାତେ ଟେକି ଦିଅ ନିଜ ଧନକୁ ।
ଉଦାର ଧରମ ବୋଲି କହେ ତୁମ ପୁରାଣ
ଅଛୁଆଁ କରି ରଖିଛ ସାତ କୋଟି ପରାଣ ।
ଭାଇ-ଭାଇ କଳି କର ହିନ୍ଦୁ-ମୁସଲମାନ
ଏକମତ ନୋହି ଭାଇ ଖେଉଛ ଅପମାନ
ସେ ତ ଜଣକୁ ହାତରେ ରଖି ମାରେ ଆନକୁ ।
ସବଳ ବୋଲି ପୀଡ଼ୁଛ ଦୁର୍ବଳ ଭାଇ
ସୁଖେ ଥାଅ ତୁମେ ଏଣେ ସେ ଉପାସେ ଶୋଇ ।
ବୀରନାରୀ ପ୍ରବାସିନୀ ଥିଲେ ଯେ, ସୁନାମ
ବିଦେଶରେ ଆଜି ତମ ରମଣୀ ଦୁର୍ନାମ
ତାଙ୍କୁ ପରଦା ଢାଙ୍କି ଘର କୋଣକୁ ।

( ୬୭ )

ସତେ ଯିବ କିଏ ଦେଶୁଁ ପରାଧୀନତା
ଯେତେ ଅଳପେ ଅଳ୍ପେ କରି କଳପେ ଧରି ଗ୍ରାସିବୁ ସ୍ୱାଧୀନ
ଭାବ ନାଶିଛୁ ସବୁ ।

ସେ ତ ପରମ୍ପରା ପରା ଜଗି ରହିଛୁ ଦେଶେ
ଜନ୍ମୁଁ ଜରାବଧି ଜୀବନ ଶେଷେ
ଅନ୍ନରେ, ବ୍ୟବହାରେ, ଧରମେ, କରମେ, ସମାଜ ରାଜନୀତି
ହୀନତା ।

ଅନ୍ତରେ ଅନ୍ତରେ ଭାଇ ଭେଦ
ମନ୍ତ୍ରରେ ସରଜି ଜାତୀୟ ଛେଦ
କୂଟ କପଟ ବଳେ ଲଗାଏ ଦ୍ୱନ୍ଦ ଜଗାଏ ଖାନ୍ତୁପଣ ବିଜାତୀୟତା ।

ଦାସ ଭାବ ଯେବେ ମନୁଁ ଯିବଟି ସରି
ଆମ୍ଭର ଜାତି ଗାରିମା ଗୁଣ ସୁମରି
ପଳାଇ ଯିବ ବାହାର ମନକୁ ଦୈତ୍ୟ, ଭଜ ପରାଜୟ ଦୁଃଖ
ଉଦାସୀନତା

( ୭୮ )

ନ ଛାଡ଼ିଲ ନିଶାଖିଆକୁ ସେ ମଉଜ ସୁଖଟାକୁ
ସାରିଦେଲ ସୁନା ଶରୀର ବୃଦ୍ଧି ତମ ସୁଖଟାକୁ

ମଦୁଆ ନିଶାର ଭେଳେ
ଗଡ଼ ଯାଇ ନାଳୁଆ ତଳେ
ନାଶି ଲଗି ଜୀବନ ହାରି ନ ଭାବ ସେ ଦୁଃଖଟାକୁ ।୧।

ଗୁଲି ଖୋର ଗଞ୍ଜାଖିଆ
ହୁକ୍କା ଚିଲମ ପାଖେ ଥୁଆ
ଭ୍ରମରୁ ଜୁଆରେସ୍ୱ କରି କରି ପୋଷ ସିନା ପେଟଟାକୁ ।୨।

ଅଫିମ ଅଫିମ ନିଶା
ଘରେ ଘରେ କଲଣି ବସା
ଭୁଜା ପିଠା ଭଳିଆ ଖାଇ ସାରିଦେଲ ଦେଶଟାକୁ ।୩।

ଲକ୍ଷ ଲକ୍ଷ କୋଟି କୋଟି
ଅବକାରି ନିଏ ବେଟି
ଶେଷେ ହେବ କୁଳମୂଳ ନଭବୃନ୍ଦ ଶେଷଟାକୁ ।୪।

( ୬୯ )

ଭାରତ ସରସି ମଝରେ ଶୋଭିତ କମଳ କି ସେ
ମୋ ଜାତି ଜୀବନ କେତନ (ମୋ) ନୟନେ ସେ ଭଲ ଦିଶେ

ସ୍ୱାଧୀନତନ୍ତ୍ର ତପନ ଉଠାଇ ଦେଉଛି ମନ
ଭସାଇ ପ୍ରେମ ସଲିଳେ ବନ୍ଧୁ ସଂଗଠେ କି ମିଶେ । ୧ ।

ଜାତୀୟ ତରଙ୍ଗ ଦୋଳି ଖେଳୁଛି କି ରଙ୍ଗେ ଚଳି
ଦୋହଲି ଶାନ୍ତ ସମୀରେ ଉଡୁଛି ଦେଶ ବିଦେଶେ । ୨ ।

ମୃଣାଳଟି ତା ଜୀବନ, ଜାତୀୟ ପବିତ୍ର ଧନ
ସ୍ୱାଧୀନତା ସେ ମୃଣାଳ ହେବରେ ବଞ୍ଚିବ କି ସେ । ୩ ।

ଅହିଂସା ରାଗରେ ରଂଜି
ସାହସ କେଶରେ ଟଂକି
କ୍ଷପଣ ଶତ ପାଖୁଡ଼ା ଗୌରବ ସୌରଭ ବିକଶେ । ୪ ।

ଯେନ ତୋଳି ସେ ସୁମନ
ଫେଇବା ଦୃଢ଼ ବନ୍ଧନ ମୁକତି ଲଭିବା ଆଶେ । ୫ ।

—o—

( ୭୦ )

## ଗଜଲ

ଅଚ୍ଛା ଗୋଲଟେବୁଲ ପାଲ ଲଗିଲାରେ
ବାବା ସତ୍ୟପୀର ପୂଜା ମାଗିଲାରେ । ୧ ।

ପାର୍ଲ୍ୟାମେଣ୍ଟ ସତ୍ୟପୀର ମ୍ୟାକ୍‌ଡ଼ୋନାଲ୍ଡ ଗାଜଣୀ ଶିର
କିଂସଲି (Kingsly) ହଲରେ ପାଲ ଅସ୍ଥାନ
ସାଜ ସଜ୍ଜା ଭାର ମସ୍ତାନ, କେତେ ରଙ୍ଗେ ପୂଜା ବାଜା
ବାଜିଲାରେ ।

ଗାଜଣୀ ବାଜଣୀ ପାଳିଆ, ମିଶିଗଲେ ଯେତେ କଳିଆ
ଶିଖ ହିନ୍ଦୁ ମୁସଲମାନ ଜୈନ ବୌଦ୍ଧ ଖ୍ରୀଷ୍ଟିଆନ
ପିଟାପିଟି ତାଳ ଖୋଳ ଭାଙ୍ଗିଲାରେ । ୨ ।

ମଡ଼ରେଟ ସାପ୍ରୁ ଜୟକାର, ନିଜାମ, ଆଲ୍‌ୱାର,
ଗାଇକୋର୍ୱାଡ଼
ବାହ ବାହ ଗାନ୍ଧି ବୁଢ଼ା ଫେରିଲାରେ । ୩ ।

ବାରେ ନୁହଁ ତିନିବାର ଯାଇଥିଲେ ଦରିଆପାର
କେତେ ଲକ୍ଷ ଗଜ ବୋହି, ନେଲେ ସେ ଶିରଣୀ କଦଳୀ ଖୋଇ
ସିଧା ହନାକଲେ ପାଲା ଭାଙ୍ଗିଲାରେ । ୪ ।

ପାଲ ହୋଇଲା ଶେଷ, ଓଡ଼ିଶା ସିନ୍ଧୁ ପ୍ରଦେଶ
ଶିରିଣୀ ବାଣ୍ଟିଲେ ବସି, ଓଡ଼ିଆ ହୋଇଲେ ଖୁସି
ସୁନା ଫଳକ ଭାଗ୍ୟେ ପାଲା ଭଣିଲାରେ । ୫ ।

( ୭୧ )

ରାଗ—ପୂରବୀ, ତାଳ—ଯତ୍ .

ଅଛୁକି ଜଗତେ ଆଜି ମୋ ପରି କେ ଅଭାଗିନୀ
ଧରଣୀ ରାଣୀ ହୋଇ ମୁଁ ହେଲି ଏଡ଼େ ଅନାଥିନୀ ।

ଲାଞ୍ଛନା ଗୁରୁ ଗଞ୍ଜଣା, ଯାତନା ନାହିଁ କଳନା
ଅନାହାର ଅନାଗ୍ରହ ବେଦନା ଦବା ଯାମିନୀ ।

( ୭୨ )

ଭସିଯାଏ ଢବା-ରାଶି ଅନନ୍ତ କାଳ-ସାଗରେ
ଲୁଚିଯାଏ ସୁଖରାଶି ଅସୀମ ଦୁଃଖ ପାଣିରେ ।

ପଳକେ ପଳକେ ଜରା, ଗରାସେ ଜୀବନ ପରା
ଯଉବନ ରାକା ଶଶୀ ମନ ଆଶା ଆକାଶରେ ।

( ୭୩ )

ଅଛୁଆଁ କଅଁ ବୋଲୁଛୁ, ସେ ସବୁ ଆମ୍ଭର ଭାଇ
ପଥ ଯେ ଆମର ଏକା ଧରମରେ ଥାଇ ।
ନଉକା ଏକା ଆମ୍ଭର, ଦରିଆ ହେବାକୁ ପାର
ବୁଡ଼ିବ ଅକାଳେ ଯେବେ ମରିବା ସରବେ ଯାଇ । ୧ ।

ଜନମ ଏକା ମାଟିରେ, ମରଣ ଏକା ମାଟିରେ
ସଂପଦେ ବିପଦେ ଏକା ସମ ଦଶା ଭୋଗୁଥାଇ । ୨ ।

ଶରୀର ମଥା ଯେପରି, ପାଦ ତ ନୁହେଁ ସେପରି
କନ୍ତୁ ଛେଦଲେ ପାଦକୁ କେହି ଚଳିବ ସୁଖେ କ ଭାଇ । ୩ ।

ଯେ ଅଙ୍ଗେ ହେଉ ସେ ଅଙ୍ଗ, ଯେତ ଗୋଟି ସଙ୍ଗେ ସଙ୍ଗେ
ନ ଦେଲେ ଶୁଖାଇ ସାରା ଶରୀର ଗଳିସେ ଯାଇ । ୪ ।

ଅଛୁଆଁ ବ୍ୟାଧି ଯେ ଆଜ, ଘୋଟିଛି ହିନ୍ଦୁ-ସମାଜ
ମୁକତ ନ ହେଲେ ବେଗେ ଝଗରେ ରହିବ ନାହିଁ ।

( ୭୪ )

( ଭଦ୍ରକ, କୋଅପରେଟିଭ୍ ବ୍ୟାଙ୍କର ବାର୍ଷିକ ସଭା ଉପଲକ୍ଷେ )

କରମ ରହୁଁଚି ବିନା ମୁକୁତା ଧରେଁ,
ପତନ ମରୁ-ଭୂଇଁରୁ ରତନ ଝରେ ।

ମିଳନ ଏକତା ଲତା ବୃନ୍ତବକ୍ଷରୀ
ସହଜେ ସହଯୋଗ ସୁମନ ଶିରୀ
ଯାଉଥ ବେଢ଼ର ମଂଜୁ କୁଂଜ-କାନନ
ଅତୁର କୃଷକ ମନ ନୟନ ହରେ । ୧ ।

ବିଳାସ ବାସନା ଅବା ଉଦାସୀ ମନ
ସମାଜ ବନକ ବନେ ତୃଷାର ଘନ
କପଟ ଲମ୍ପଟ ସ୍ୱାର୍ଥ ବୃତ୍ତସୀ ରୈର
ସମବାୟ୍ୟ ମାଛ ଘାଣ୍ଟି ପରାଣେ ମାରେ । ୨ ।

ଆଜ ଏ ମିଳନ ଘଟନେ ସହଯୋଗୀର
ସହଯୋଗୀ ବୃନ୍ଦ ମୁଖୁଁ ଶୁଣିବ ଗୀର
ଶୁଣି ସେ ଗୀର କରମେ ଲଗିବ ଯାଇ
ପଲ୍ଲୀର ହୃତ ସାଧନେ ପରାଣ ଭରେ । ୩ ।

( ୭୫ )

## ସ୍ୱଦେଶ ସଂଗୀତ

ସହଯୋଗୀ ଭଠ ଏବେ ଜାଗି ହେ,
କରମରେ ଯାଅ ନିଜେ ଲଗି ହେ
ଭରମରେ ନ ଫିରନ୍ତି ପାଛ,
ମରମରେ ପାଇବ ଅଶାନ୍ତି
ଚରମରେ ହେବ ଦୁଃଖ ଭାଗୀ ହେ । ୧ ।

ଗ୍ରାମେ ଗ୍ରାମେ କର ହେ ସମିତ,
ନାଶ ବାକ୍ ବିବାଦ ଅମିତ
ପରେ ଯାଅ ନାହିଁ ଋଣ ମାଗି ହେ । ୨ ।

ମିଶି କର ନିଶି ନୃତ୍ୟଶାଳୀ,
ଜ୍ଞାନ ଦୀପ ହୃଦେ ଦିଅ ଜାଳି
ପର ଲଗି ହୁଅ ସ୍ୱାର୍ଥ ତ୍ୟାଗୀ ହେ । ୩ ।

ସଫା ରଖ ଗ୍ରାମ ବାଟ ଘାଟ,
ଅରଟରେ ବସି ସୂତା କାଟ
କପା, ଏଣ୍ଡି ଚଷି ଲୁଗା ଲଗି ହେ । ୪ ।

ଛାଡ଼ ଦିଅ ନିମାଖିଆ ଭାଇ,
ଛୁଆଁ ଛୁଇଁ ଦୋଷକୁ ଉଠାଇ
ଅଭିମାନ ମନେ ଦିଅ ଦାଗି ହେ । ୫ ।

( ୭୬ )

( ନିଖିଳ ଉତ୍କଳ ନେତା ସମ୍ମିଳନୀ କଟକ, ଅଧିବେଶନ ଉପଲକ୍ଷେ )

ସଚ୍ଚେ ପୂରବ କି ସେହି ଆଶା
ଉତ୍କଳ ଜୀବନ ମାନ ମରଣ ଭବ ଭରସା ( ଧ୍ରୁବ )

ଯା'ର ଗଉରବ ଗୁଣ ଗାରିମା କଳା-କଉଶଳ ଶିଳ୍ପ ସୁଷମା
ଗାଉଛି ଜଗତ, ସେ ଜାତିର ଦୁଃଖ ଅପାର ନିରାଶା । ୧ ।

ଯାର ମହିମା ଗାଉଛି ସାଗର, ଘର ନାହିଁ ବୋଲିବାକୁ ନିଜର
ନିଜ ଘରେ ପର ପର ଘରେ ସହେ ଲାଞ୍ଛନା କି କୁଦଶା । ୨।

ଏକ ଆଶାର ଅନେକ ଜୀବନେ
ଖେଳେ ଉତ୍କଳ ଭବନେ ଭୁବନେ
ସୁଖ ରବି ଉଦେ ହେବକି ଗଗନେ ଛୁଟିବକି ତମସା । ୩ ।

( ୭୭ )

ଫଗୁଣ ମାସେ ଫଗୁ ନିବାସେ ଋତୁର ରାଜା ରାଜେ ଗୋ
ମଳୟ ରଥେ ଆଗୁଆ ପଥେ ଚତୁର ପିକ ସାଜେ ଗୋ
ବୀଣାପାଣି ବର ବାଣୀ ସାଧନା, ଆମ୍ଭ ଜୀବନେ ଏକା କାମନା
ସଫଳ ଆଜ, ସଫଳ ଆଜ, ଶ୍ରମ ବରଷେ ମନ ହରଷେ
ପରାଣ ବୀଣା ବାଜେ ଗୋ ।

ଭକତ ମାଳା ପିନ୍ଧାଅ ଗଳେ, ସେବ ଅତିଥି ଧୀରତ ଭୋଳେ
ଦେଖ ହେ ଆସି, ଦେଖ ହେ ଆସି, ତା ଦରଶନେ
ତୁଷାର ବନେ, ଲୁଚଇ ଶୀତ ଲାଜେ ଗୋ ।

( ୭୮ )

ଯେନ ସଦା ସୁମନେ ସୁଧୀ ସୁଧା-ଧାର ଗୀର ଗଉରବନ୍ତୁ
ଭଲ ମନ୍ଦ ଦୁଇ ନିରେଖି, ହଂସ ଯଥା ଚିଏ ପରଖି
କ୍ଷୀର ନୀର ତେଜି, ଯେନ ମନେ ହେଜି ·
କରମ ସୁମନ ସଞ୍ଚରନ୍ତୁ । ୧ ।

ଦେଶ ଦଶ ସେବା ବ୍ରତ
ପାଳୁଥିବ ହେ ଅବିରତ
ଜାଳୁଥିବ ହୃଦେ ଜ୍ଞାନର ପ୍ରଦୀପ ଅନ୍ଧାରିବ ପଥ ଗଉରବନ୍ତୁ । ୨ ।

( ୭୯ )

( ଉତ୍କଳ ହରିଜନ ସମ୍ମିଳନୀ ଉପଲକ୍ଷେ )

ଅସ ମିଶି ସୋଦରେ ଆଜ ବଢାଇବା ପଦ କଂଜ ଯୋଗୀର
ଉତ୍କଳ ସୁମନ ପୀରତ ଚନ୍ଦନ ବୋଳା ମାଳ ଦେଇ ଗଳେ ତ୍ୟାଗୀର

ତ୍ୟାଗୀ ଯୋଗୀ ପୂଜା ଭଜନ
ହରିହର ଦ୍ୱିଜ ରଞ୍ଜନ
'ମୋ ଜନମ ପର ଉପକାର ବ୍ରତ' ବିଳାସ ବାସନା ନାହିଁ ଭୋଗୀର

ଅକପଟ ହୃଦୟ ଯାର
ମିଠାଗୃହ ମିତ ବେଭାର
ସରଳ ସୁନ୍ଦର ବେଶ ଭୂଷା ଚାରୁ ଚରିତ ପିୟୂଷ ଗୋଳା ତା ଗୀର

( ୮୦ )

ଜାତି ନାମେ ଦିଅ ଦୋହାଇ, ପୁରାଣ ସ୍ମୃତିମା କର ବଢ଼ାଇ
ଗୁଣ କରମରେ ଜାତି ବାଣ୍ଟି
ସରଜନା ଗୃର ଜାତି ଖଣ୍ଡି, ଅଶେଷ ଜାତିଗୁଣର ଖ୍ୟାତି ପୁରାଣେ
ଚାହିଁ ।

କହ କେଉଁ ଜାତି ନିଜ ପେଷା
କହୁଛୁ ଜାତିର ଯା ବେଉସା ଯେ ଯାହା ଗୃହ ନେଉଛନ୍ତି ବାଛି
ନିୟମ ନାହିଁ ।

ନର ଦେହେ ନାରାୟଣ ଥାଇ
ପୁରାଣର କଥା ଭୁଲ ଯାଇ
ଛୁଆଁ ଅଛୁଆଁ ମଣିଷ କିଆଁ ହେବ କି ପାଇ ?

( ୮୧ )

ଆଦର ଗୁଣିଜନର ସବୁଠି
କରମ ଉଦ୍ଭରେ ମଂଜୁ ସୁମନ ଉଠଇ ଫୁଟି

ଶ୍ରମରେ ସାଧନା ଲଭ୍ ସାଧନାରେ ସିଦ୍ଧି ଗୋଟି
ସିଦ୍ଧିବଲେ ଧନ୍ୟ ଜଣି ମାଟି ରତନ ପାଲଟି

ଶିର ନୁହେଁ ନାମ ପଦ ପଦକ ହୀରକ କୋଟି
ପର ସେବା ପଦକଟି ଅମୂଲ୍ୟ ପଦବୀ ଗୋଟି

## ( ୮୨ )

( ଭଦ୍ରକରେ କବିଙ୍କୁ ସମ୍ବର୍ଦ୍ଧନା ଉପଲକ୍ଷେ )

ତବ ଆସନ ତଳେ ଶିରଟି ମୋର ଯାଉ ହେ ଟଳିଟି
ସାଜୁ ସଖା ଗୋ ବରଣମାଳା ତୁମ୍ଭର ଗଳେ ପ୍ରେମେ ଆଲଟି

କବି ହେ ! କବି ହେ ! ଆଜି ତୁମ୍ଭ କଣ୍ଠା
ଉତ୍କଳର ଆଶା ସବିତା
ସେହି କବିତା ରଶ୍ମି ଲଗି (ମୋ) ହୃଦ କମଳ ଉଠୁ ଗୋ ଫୁଟି ।

ବନ୍ଦନ ହେ ! ବନ୍ଦନ ହେ ! ତବ ସଙ୍ଗୀତରାଜି
ଉଠୁ ମୋ ହୃଦବୀଣା ଯନ୍ତ୍ରରେ ବାଜି
ଶୂନ୍ୟ ପ୍ରାଣ ପୂର୍ଣ୍ଣ ହେଉ ଚୂର୍ଣ୍ଣ ହେଉ ଗରବ ଗାଥା ।

ପୁଲକ ନୀର ନୟନୁ ବହି
ଦେଉ ହେ ତବ ପଦ ଯୁଗକୁ ଧୋଇ
ସେହି ନୀରେ ସେ ପୀୟୂଷ ଝରି ମୋ ବକ୍ଷେ ରାଜୁ
ସୁମନ ଗୋଟି କବିତା ଫୁଟି ।

( ୮୩ )

ଉଠ ବେଗେ ଜାଗି ହେ
ପତନେ ନାଶିବ ଯଦ ପଲ୍ଲୀ-ହିତ ଲାଗି ହେ ।

ନଗର ସହର ସୃଷ୍ଟି ପଲ୍ଲୀବାସୀ ଲାଗି ହେ
ସେହି ପଲ୍ଲୀବାସୀ ଆଜ ମହାଦୁଃଖ ଭାଗୀ ହେ ।

କୃଷୀ କୃଷି କରେ କାଟି ଦିନ ରାତି ହେ
ଧନୀ ମହାଜନେ ହୋନ୍ତି ତାର ଫଳଭୋଗୀ ହେ ।

ପଲ୍ଲୀବାସୀ ମାଗେ ଦ୍ୱାରେ ଦ୍ୱାରେ ଋଣ ମାଗି ହେ
ରୋଗ ଶୋକେ ଜର ଜର ଯାଏ ତନୁ ଭାଜି ହେ ।

କେ ଅଛୁ ପଲ୍ଲୀରେ ଦେବାକୁ ସେ ବ୍ୟାଧି ଦାଗି ହେ
ମାଛି ସର ମରେ ନିତି ନାନା ରୋଗେ ରୋଗୀ ହେ
ବଞ୍ଚାଅ ଦରିଦ୍ରେ ହୋଇ ଭ୍ରାତୃ ଅନୁରାଗୀ ହେ ।

( ୮୪ )

କାନ୍ଦନା ଜନନୀ ଗୋ କାତର ସୁରେ ଆଉ
ଦଅନା ଗୋ ବ୍ୟଥା ପ୍ରାଣେ ମରମ ବେଦନା ଆଉ

ଜନନୀ କୋଟି ସୁତର ହୋଇଥିଲୁ ରାଜରାଣୀ
ଆଜ ଅନାଥିନୀ ବେଶେ ବୁଲୁ ମା ଗୋ କାଙ୍ଗାଳୁଣୀ
ଭରତେ ଜାନକୀ ତୁ ଗୋ ଏକଥା ମନରେ ଥାଉ । ୧ ।

ପରାଧୀନତା କବଳ ଦେଇଛୁ ସୁଖକୁ ଗ୍ରାସି
ଭାଇ ଭାଇ ଭେଦାଭେଦ ଦେଇଛୁ ଜାତକୁ ନାଶି
ଆସିବ ଆସୁଛି ଦିନ ଯା ହେବାର ହେବ ହେଉ । ୨ ।

( ୮୫ )

ଆସ ଆସ ଦେବୀ ସିଂହସଂଗିନୀ ଗୋ
ନାଶ ପାପ ଖଣି ରଣରଂଗିଣୀ ଗୋ ।

ହିନ୍ଦୁସ୍ଥନେ ଶକ୍ତି ଦେ ମା' ଭାରି
ଝଲସି ଯାଉଗୋ ଖଡ୍ଗକାରି
ସ୍ୱାଧୀନ ଭାବନା ଜାଗୁ ଗୋ ପରାଣେ
ଯାଉ ଛୁଟି ଭୟଭଙ୍ଗିମା ଗୋ ।

ଯାତନା ଦଅନା ଗୋ ଆଉ ଏତେ
ଦିଅ ଚେତନା ହର ଦୁଃଖ ଯେତେ

ଶକତିରୂପିଣୀ କମଳା ଗୋ
ଭକତି ଭାବ ବୋଲା ଅବଲା ଗୋ
ବୁହାଇ ଦଅ ମା' ଶକତିର ଧାରା
ମରୁ ପାଷାଣେ ଗିରିନନ୍ଦିନୀ ଗୋ ।

—୦—

( ୮୬ )

ଗିରୀଶ ନନ୍ଦିନୀ ଅସ ଗୋ ଭକତ ହୃଦୟ ଆସନେ
ନଚେ ଗୋ କମଳା ରାଣୀ
ଦଅ ଗୋ ସଂପଦ ଆଣି
ଯାଉ ଦୁଃଖ ଦୈନ୍ୟ ବିପଦ ତବ ଶାସନେ ।

ସଜାଡ଼ ହୃଦୟ ବୀଣା
ଅଜ୍ଞାନ-ତିମିର ଭେଦ, ରିପୁ ଛେଦ
ଭର ଆଜି ଜନନୀ ସନେ ।

ଶୋଭିଛ ସିଂହବାହିନୀ
ପଶୁବଳ ହିଂସାନାଶିନୀ ସୁହାସିନୀ
ହସୁ ଗୋ ଏ ଦେଶ ଶସ୍ୟ ବସନେ ଭୂଷଣେ ।

# ଉତ୍ସର୍ଗ ପତ୍ର

ଯେଉଁ ୰ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶ ଉତ୍କଳର
ପ୍ରତି ପଲ୍ଲୀରେ ଜାତୀୟତାର ଜାଗ୍ରତ କରିବାପାଇଁ ଆଜୀବନ
ବହୁତ୍ୟାଗ ଓ କଷ୍ଟ ସ୍ୱୀକାର କରି 'ସେବେ ଜୀବନ
ଦେଲେ, ଯାହାଙ୍କୁ ଆଖିଆଗରେ ଆଦର୍ଶରଖି ମୁଁ ୭ ବର୍ଷ
କାଳ ଉତ୍କଳ କଂଗ୍ରେସ କର୍ମୀ ଭାବରେ ଦେଶର
କାର୍ଯ୍ୟ କରିବାକୁ ସୁବିଧା ପାଇ ନିଜର ଜୀବନକୁ
ଧନ୍ୟ ମଣିଛି, ସେହି ୰ ଉତ୍କଳମଣି ପଣ୍ଡିତ
ଗୋପବନ୍ଧୁ ଦାଶଙ୍କ ସ୍ମୃତି ସ୍ୱରୂପ
ମୋର ଏହି 'ଉତ୍କଳ ବୀଣା' ନାମକ
କ୍ଷୁଦ୍ର ଜାତୀୟ ସଙ୍ଗୀତ ପୁସ୍ତିକାର
୧ମ ଭାଗଟି ( ୧ମ ଝଙ୍କାର )
ପ୍ରକାଶ କଲି । ବିନୀତ ପ୍ରାର୍ଥନା
୰ ଉତ୍କଳମଣି ସ୍ୱର୍ଗରେ ଥାଇ
ସୁଦ୍ଧା ମୋର ଏହି ଅକିଞ୍ଚନ
ଭକ୍ତି ପୁଷ୍ପାଞ୍ଜଳି ଗ୍ରହଣ
କରନ୍ତୁ । ଇତି

ବିନୟାବନତ
ପ୍ରଣେତା

# ଭୂମିକା

ଓଡ଼ିଶାରେ ଅସହଯୋଗ ଆନ୍ଦୋଳନ ପରେ କେତେଗୁଡ଼ିଏ ଜାତୀୟ ସଂଗୀତ ବହି ପ୍ରକାଶିତ ହୋଇ ସାରିଛି । ଉକ୍ତ ପୁସ୍ତକମାନଙ୍କ ମଧ୍ୟରୁ ଯୁଗବାଣୀ ଓ ମଧୁପଗୁଞ୍ଜନର ନାମ ଉଲ୍ଲେଖ ଯୋଗ୍ୟ । ମୋପରି ନଗଣ୍ୟ ସଙ୍ଗୀତ ଲେଖକର ଏ କ୍ଷୁଦ୍ର ପୁସ୍ତିକା ଉପରୋକ୍ତ ପୁସ୍ତକାମାନଙ୍କର ସମକକ୍ଷ ହେବ ନାହିଁ ସତ୍ୟ, କିନ୍ତୁ ମୋର ଗାନ ଗୁଡ଼ିକୁ ଯେପରି ଗ୍ରାମର ସାଧାରଣ ଲୋକେ ସହଜରେ ବୁଝିପାରିବେ ଓ ଗାଇପାରିବେ ସେହି ଉଦ୍ଦେଶ୍ୟରେ ସରଳଭାଷାରେ ଓ ସରଳସ୍ୱର ଓ ତାଳଯୋଗେ ରଚିତ ହୋଇ ଥିବାରୁ, ଆଶାକରେ ଏହା ଦେଶରେ ଆଦୃତ ହେବ । ଏହି ଗାନଗୁଡ଼ିକ ପ୍ରାୟ ଅଧିକାଂଶ ସଭା ସମିତିରେ ବୋଲା ହୋଇଛି ଏବଂ କେତେକ ସମ୍ମିଳନୀ ଉପଲକ୍ଷରେ ରଚିତ ହୋଇଛି । ଦେଶବାସୀ ଏହି ଗାନଗୁଡ଼ିକୁ ଠିକ ସ୍ୱର ଓ ତାଳରେ ଗାଇ ଏହାର ବହୁଳ ପ୍ରଚାର ଦେଶରେ କରାଇ ପାରିଲେ ମୋର ପରିଶ୍ରମ ସଫଳ ହେବ ।

ଏହି ଗାନଗୁଡ଼ିକର ସ୍ୱର ନାମକରଣରେ ଭଦ୍ରଖ ଗୋଇପୁର ନିବାସୀ ଶ୍ରୀମାନ୍ ଗୌରାଙ୍ଗଚନ୍ଦ୍ର ଦାସ ମୋତେ ସାହାଯ୍ୟ କରି ଥିବାରୁ ମୁଁ ତାହାଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଅଛି ।

ଶ୍ରୀ ବାଞ୍ଛାନିଧି ମହାନ୍ତି
ଇରମ, ଭଦ୍ରଖ

## ବନ୍ଦେ ମାତରମ

(ବାଲେଶ୍ୱର ଜିଲ୍ଲା ସମ୍ମିଳନୀ ୬ଷ୍ଠ ଅଧିବେଶନେ ଜଳେଶ୍ୱରଠାରେ ଗୀତ)

ରାଗ—ଭୀମପଲଶ୍ରୀ ମିଶ୍ର, ତାଳ—ଏକତାଲ

ଧନ-ଜନ-ମନ-ଶକ୍ତି-ଦାୟିନୀ ଭାରତ ମମ ଜନନୀ
ସୁଖଦା ଶୁଭ-ଶାନ୍ତି-ଦାୟିନୀ ଅମ୍ବ ତ୍ୱାଂ ନମାମି । ଘୋଷା ।

ହିମଗିରି-ସୀମନ୍ତ-ତୁଷାର-ଶୁଭ୍ର-କିରୀଟ-ଧାରିଣୀ
ନୀଳ ଫେନିଲ-ଅନନ୍ତ-ସିନ୍ଧୁ-ଧୌତ-ଚରଣ-ଜନନୀ । ୧ ।

ବିନ୍ଧ୍ୟାଚଳ-ମଧ୍ୟଦେଶ-ମେଖଳା-କଟି-ଶୋଭିନୀ
ପ୍ରସାରିତ-ଭୁଜ-ଗୁର୍ଜ୍ଜରବଙ୍ଗ-ବ୍ରହ୍ମ-ଭରତ-ବାହିନୀ । ୨ ।

ତ୍ରିଂଶ-କୋଟି-ସନ୍ତାନ-ଯୁକ୍ତ-ମଧୁର-କଣ୍ଠ-ନାଦିନୀ
ବିଶ୍ୱ-ମୋହିନୀ ଜ୍ୟୋତିରୂପିଣୀ ଜଗଦାଲୋକ-ଦାୟିନୀ । ୩ ।

(ବାଲେଶ୍ୱର ଜିଲ ସମ୍ମିଳନୀ ୪ର୍ଥ ଅଧିବେଶନ ସୋରୋଠାରେ ଗୀତ)

ରାଗିଣୀ—କୃପାସିନ୍ଧୁ, ତାଳ—ଆଡ଼ାଠେକା

ଆଜ କେତେଦିନେ ହୋଇବୁ ଉଦାସୀ,
ଭାଇ ତୁ !

ଦିନୁଁ ଦିନୁଁ ଦୁଃଖରାଶି
ବଢ଼ିଲ ଦେଶରେ ଆସି
ସୁଖ ଶାନ୍ତି ଗଲା ସବୁ ଭାସି । ୧ ।

ଦାନା କନା ଯୁଟୁନାହିଁ
ବୁଲୁଥାଉ ଦେହି ଦେହି
ତେବେ କର୍ପା ହେଉଛୁ ବିଳାସୀ । ୨ ।

ବିଦେଶୀ ବସନେ ମଜ୍ଜି
ସ୍ୱଦେଶୀ ବସନ ତେଜି
ପର ପୋଷି ହେଲୁ ସର୍ବନାଶୀ । ୩ ।

ନିଶା ପରବଶ ହେଲୁ
ବୁଦ୍ଧି ବଳ ହରାଇଲୁ
ଧରମ କରମ ଦେଲୁ ନାଶି । ୪ ।

ଘରେ ଘରେ କଲୁ କଳି
ମହତକୁ ଦେଲୁ ବଳି
( ତୋତେ ) ରାଗ ଅହଂକାର ଦେଲା ଗ୍ରାସି । ୫ ।

କର ବଢ଼ୁଛି ଯେପର
ଦର ବଢ଼ୁଛି ସେପର
(ଏ) ଶାସନ ହେଲଣି ଗଳା ଫାଶି । ୭ ।

ସାହସ -ସଞ୍ଚୟ କର
ମିଥ୍ୟା ପାପ ପରିହର
( ସଦା ) ସତ୍ୟ ଲଗି ଦଅ ପ୍ରାଣ ଝାସି । ୮ ।

( ଗୀତ )

ରାଗ—ମଲ୍ଲାର୍, ତାଳ ଧ୍ରୁପଦ ପଞ୍ଚମଂ ସଞ୍ଚାର

( ଶ୍ୟାମ ବଜାର୍ଣ୍ଣେ ସ୍ୱାଟେନ, ଚଲେ ସର୍ଖି ଦେଖନେ, ବୃନ୍ଦରେ )

ଭାରତ ସୁନ୍ଦରରୂପ ବିରାଜେ ।
ହିମଗିରି ଶିରେପରି ଛତ୍ର ବିରାଜେ
ଶୁଭ୍ର ତୁଷାର ହାର ମୁକୁଟ ବିରାଜେ । ୧ ।
ବୈଠକର କଣ୍ଠହାର ବ୍ରହ୍ମସିନ୍ଧୁର ଧାର
ଝଲମଲ ବିନ୍ଧ୍ୟଗିରି ମେଖଳା ସାଜେ । ୨ ।
ପ୍ରସାରିତ ବାମଭୁଜ କାମରୂପ ଦେଶେ
ବାମେତର ଗୁର୍ଜ୍ଜର କାଶ୍ମୀର ରାଜେ । ୩ ।
ଦ୍ରାବିଡ଼ ସହ୍ୟାଦ୍ରି ଅଞ୍ଚଳ ଶୋଭେ
ମାଳବଙ୍ଗ ମାରମାଧି ମଣ୍ଡପ ରାଜେ । ୪ ।
ଚରଣ କମଳ ଦଳ କଳିଙ୍ଗ ଅଙ୍ଗ ଉତ୍କଳ
ଭାରତ କମଳାସନା ଆସନ ସାଜେ । ୫ ।

## ତାଳ ଯନ୍ତ୍ର

( ଗଲଣି ତ ଗଳ କଥା ଗୋ ପ୍ରିୟସଖି ବୃଥିରେ )

ଯନ୍ତୁ ନାହିଁକି ତଳେ ମନେ ମୋଦର ହେ
ପୂର୍ବ ମହିମା ପୂର୍ବ ଗରିମା ଉତ୍କଳ ଅତୀତ କାହାଣୀ ଶ୍ରବଣେ ।

କବି ଉପେନ୍ଦ୍ର ଭଞ୍ଜ କବିତା-କାସାର-କଞ୍ଜ
ଦୀନକୃଷ୍ଣ, ବଳରାମ, ଜଗନ୍ନାଥ
ସାମନ୍ତ ସାହିତ୍ୟିକ ଲୀଳାବତୀ ଗାଣିତ୍ୟକ
ଜ୍ୟୋତିଷ ପ୍ରବର ଶ୍ରୀଚନ୍ଦ୍ରଶେଖର
ଉଇଁଥିଲେ ଭବ ଭାଗ୍ୟେ ଏହି ଉପବନେ । ୧ ।

ଯଯାତି ଚୋଡ଼ଗଙ୍ଗ ପୁରୁଷୋତ୍ତମ ଅନଙ୍ଗ
ମରକତ ଆଦି ବୀର ଚୂଡ଼ାମଣି
ଗାଏ ଯାଙ୍କ କୀର୍ତ୍ତି କେତେ ସୁଷମା ସ୍ଫୁରିତ
କାଠଯୋଡ଼ି ବନ୍ଧ ଯାଙ୍କ ଯଶୋଗନ୍ଧ
ତା ସନ୍ତାନ କାହିଁ ଅବସନ୍ନ ମଳିନେ ? । ୨ ।

ଶିଳ୍ପୀ ଶିରୋମଣିର ଗର୍ବ କରଇ ଚୂର
କୋଣାର୍କର କାନ୍ତି ଭୁବନେଶ୍ୱର
ବଡ଼ଦେଉଳ ଶିଖର ଚୁମ୍ବିଲେ ଧ୍ରୁବ ଶିର
ବିଶ୍ୱକର୍ମାବରପୁତ୍ର ଯାର କୁମର
ତା କୁମର ଭୁମ୍ଭେ କି ନୁହଁ ପ୍ରତେ ମନେ । ୩ ।

ମହାତ୍ମା ଶ୍ରୀଚୈତନ୍ୟ          ନରଶସ୍ତ ପ୍ରେମ
କୃପାକଣ ଯାର ଭାଗ୍ୟ ଜନମିଲେ
ସେ ଜାତି ଜନମସ୍ଥାନ          ଭାରତେ ପବିତ୍ରଧାମ
ଯହିଁ ଜଗନ୍ନାଥ ବିଜେ ଜଗତ୍‌ତାତ
ତା ସନ୍ତାନ କିଆଁ ଆଜ ଅଧୋବଦନେ ? । ୪ ।

ବୀରଧୀରବର          ଗଜପତି ଗୌଡ଼େଶ୍ୱର
ମୁକୁନ୍ଦ ଦେବ ଭୂପତି ବର
ନବକୋଟି କର୍ଣ୍ଣାଟ          ଉତ୍କଳର ସମ୍ରାଟ
ଶତ ନରପତି ଯାଁ'ଙ୍କ ପାଦ କତି
ନୁଆଁନ୍ତି ମସ୍ତକ ଶ୍ରୀଗ୍ରାମୁଙ୍କ ଦର୍ଶନେ । ୫ ।

ରାଗ—ମିଶ୍ର, ତାଳ—କାହାରବା

( ଆଜି ଖେଳିବା ଖେଳ ବୃତ୍ତରେ )

ଆଜି ଆସିଛି ଚଞ୍ଚଳ
ଭାରତେ ଆସିଛି ଏକ ନବୀନ ବେଳ
(ଦେଖ) କୋଟି ବୀରେ ପଣକରି ହେଲେଣି ମେଳ (ଧ୍ରୁବ)

ଦଳେ ଦଳେ ସାଜିଲେଣି ରଣ ଅଙ୍ଗନକୁ
ପରଖିବେ କେ କେତେ ଜାଣିବ କାହାକୁ
ଧରମ ଅଧରମକୁ ନୀତି ଅନୀତିକୁ ପୁଣି ଶୌର କେତେ
ଅବା ମନର ବଳ । ୧ ।

ଦଳେ ଦଳେ ପଶୁଛନ୍ତି ବନ୍ଦୀ ଭବନକୁ
ଦଳେ ଦଳେ ଡାକୁଛନ୍ତି ଆପେ ଶମନକୁ
(ସେ) ମାରିବେ ନାହିଁ ମରିବେ ନୀତି ବୀରଙ୍କର ଦେଖି
ଥରହର ହୁଏ ଅରି ଏ କଉତଳ । ୨ ।

ଦମନ ନୀତିର ଭୟ ଦେଖାଉଛି ମାୟା
ଆଗହୁଁ ଓଗାଳୁ ଅଛି ରଣ-ପଥ ଛାୟା
(କେବେଁ) ଭୁଲିବ ନାହିଁ, ମାୟାରେ ଡରିବ ନାହିଁ, ଛାୟାରେ
ଗୟାସୁର ପ୍ରହ୍ଲାଦ ଧ୍ରୁବର ବଳ । ୩ ।

ଅକ୍ଷୟ ତେଜ ଭଣ୍ଡାର ଭାରତ ମାତାର
ଅଜେୟ ତା ବୀର-ସୁତେ ସଦା ତ୍ୟାଗୀ ବୀର
(ଆଜି) ଯୁଝି ଯେ ରଣ ଜିଣିବେ ବୀରବର ଦଳ
ଝଲସିବ ଆଖି ଦେଖି ଦେଶ ସକଳ । ୪ ।

ପଣ ଭାଇ ସେ ସମରେ ହୋଇ ହସିଖୁସି
ଅନ୍ୟାୟ ଅମିତ ବଳ ଦିଅ ବେଗେ ନାଶି
ମହାତ୍ମାର ମହିମାମୟ ଆଶିଷ ବରଷି
(ନବ) ନବ ଚେତନେ ଚେତାଇବ ଭାଇ ସକଳ । ୫ ।

ଗାଅ ସ୍ୱାଧୀନତା ଜୟ ଗାଅ ଉଚ୍ଚସ୍ୱରେ
ଭାରତ ମାତାର ଜୟ ଯୁଗ ଯୁଗାନ୍ତରେ
ଗାଅ ଭାଇ ଶାନ୍ତି ସେନା ଜନନୀର ଜୟ
ଜପି ଶାନ୍ତି ଓଁ ଶାନ୍ତି, ଓଁ ଶାନ୍ତି କେବଳ । ୬ ।

# ସଂକୀର୍ତ୍ତନ

୦

କୀର୍ତ୍ତନ ସୁର -ତାଳ କଓ୍ୱାଲି ।

( ଓ ଗୋସ୍ୱାମୀ ଓ ଭାଇ ନିତାଇ ସଙ୍ଗେ ଆନନ୍ଦେ
ହରିଗୁଣ ଗାଏ ରେ )

ଗାଅ ଗାନ୍ଧୀ ଜୟ ଗାଅ ଜୟ ଜୟ ବୋଲି
ବଦନ ଭରି ଗାଅ ଗାଅ ହେ ( ଘୋଷା )

ଜୟ ଗାନ୍ଧୀ ଜୟ ଗାନ୍ଧୀ ବୋଲି
ନାଚରେ ଦୁଇ ବାହୁ ତୋଳି ରେ
ପ୍ରେମେ ଦେଇ ତାଳି ନାଚ ଚଳି ଗାଇ ଜୟ ଜୟ ହେ । ୧ ।

ମହାତ୍ମା ମୋହନ ଦାସ ଦ୍ୱାରକା-ପୁରୀରେ ବାସ
ଦ୍ୱାପର-ଦ୍ୱାରକା-ଦ୍ୱୀପ-କୃଷ୍ଣ-କଳାମୟ ହେ । ୨ ।

ଘୋଟିଛି ଅଶାନ୍ତି ନିଆଁ ଦେଖୁନା ସାରା ଦୁନିଆଁ
(ତାର) ପ୍ରତିକାର ସିନା ଏକା ମହାତ୍ମା ଆଶ୍ରୟ ହେ । ୩ ।

ଦାନବ ଭୁଜ ମନ୍ଦରେ ଭାରତ ମାତା ବନ୍ଦୀରେ ହେ
(ମା'କୁ) ମୁକୁଳାଇବୁ ତୁ ଯଦ କରନାହିଁ ଭୟ ହେ । ୪ ।

ମନୁଷ୍ୟ ନିଜେ ତ ହୋଇ ମନୁଷ୍ୟେ ନ ଡର ଭାଇ ହେ
ଜଗତେ ନ ଡର ଆନେ ଏକା ଜଗନ୍ମୟ ହେ । ୫ ।

ପଣ ଭଇ ସେ ସମରେ ହୋଇ ହସିଖୁସି
ଅନ୍ୟାୟ ଅମିତ ବଳ ଦିଅ ବେଗେ ନାଶି
ମହାତ୍ମାର ମହନୀୟ ଆଶିଷ ବରଷି
(ନବ) ନବ ତେଜେ ତେଜାଇବ କର ସବଳ । ୫ ।

ଗାଅ ସ୍ୱାଧୀନତା ଜୟ ଗାଅ ଉଚ୍ଚସ୍ୱରେ
ଭରତ ମାତାର ଜୟ ଯୁଗ ଯୁଗାନ୍ତରେ
ଗାଅ ଭଇ ଶାନ୍ତ ସେନା ଜନନୀର ଜୟ
ଜପି ଶାନ୍ତି ଓଁ ଶାନ୍ତି, ଓଁ ଶାନ୍ତି କେବଳ । ୬ ।

# ସଂକୀର୍ତ୍ତନ

୦

କୀର୍ତ୍ତନ ସୁର —ତାଳ କର୍ତ୍ତ୍ୱାଲ ।

( ଓ ଗୋରାରାୟ ଓ ଭାଇ ନିତାୟ ସଙ୍ଗେ ଆନନ୍ଦେ
ହରିଗୁନ ଗାୟ ରେ )

ଗାଅ ଗାନ୍ଧୀ ଜୟ          ଗାଅ ଜୟ ଜୟ ବୋଲ
ବଦନ ଭରି ଗାଅ ଗାଅ ହେ ( ଘୋଷା )

ଜୟ ଗାନ୍ଧୀ ଜୟ ଗାନ୍ଧୀ ବୋଲ
ନାଚରେ ଭାଇ ବାଦ୍ୟ ଢୋଲ ରେ
ପ୍ରେମେ ଦେଇ ତାଳି ନାଚ ଚଳ ଗାଇ ଜୟ ଜୟ ହେ । ୧ ।

ମହାତ୍ମା ମୋହନ ଦାସ          ଦ୍ୱାରକା-ପୁରୀରେ ବାସ
ଦ୍ୱାପର-ଦ୍ୱାରକା-ଦ୍ୱୀପ-କୃଷ୍ଣ-କଳାମୟ ହେ । ୨ ।

ଘୋଟିଛି ଅଶାନ୍ତି ନିଆଁ          ଦେଖୁନା ସାରା ଦୁନିଆଁ
(ତାର) ପ୍ରତିକାର ସିନା ଏକା ମହାତ୍ମା ଆଶ୍ରୟ ହେ । ୩ ।

ଦାନବ ଭୁଜ ମନ୍ଦରେ          ଭାରତ ମାତା ବନ୍ଦୀରେ ହେ
(ମା'କୁ) ମୁକୁଳାଇବୁ ତୁ ଯଦ କରନାହିଁ ଭୟ ହେ । ୪ ।

ମନୁଷ୍ୟ ନିଜେ ତ ହୋଇ          ମନୁଷ୍ୟ ନ ଡର ଭାଇ ହେ
ଜଗତେ ନ ଡର ଆନେ ଏକା ଜଗନ୍ନାଥ ହେ । ୫ ।

ଧନ ଜନ ପ୍ରାଣ ଦେଇ ସ୍ୱରାଜ୍ୟ ନିଅ ହେ ଭାଇ
ସ୍ୱରାଜ୍ୟ-କରତା ତିଲକର ଜୟ ଜୟ ହେ । ୬ ।

ଅରହି ଅସ୍ତ୍ରର ବଳେ ସ୍ୱରାଜ୍ୟ ଲଭିବା ହେଲେ ହେ
(ସେତ) ସୁଦର୍ଶନ ଚକ୍ର କରିଦେବ ପାପ କ୍ଷୟ ହେ । ୭ ।

ଭାରତ ମାତା ଉଦ୍ଧାର ସ୍ୱରାଜ୍ୟ ପ୍ରାପତ ସାର ହେ
ଜଗତ-କରତା ଜଗନ୍ନାଥେ କର ଲୟ ହେ । ୮ ।

# କୀର୍ତ୍ତନ ସୁର

ରାଗ—ଖମ୍ବାଜ ମିଶ୍ର,   ତାଳ—ଏକତାଳ

( ହରି ବଲିଭ ଆର ବ୍ରଜେର ପଥେ ଚଲିବରେ, ବୃନ୍ଦରେ )

ଠେକ ଠେକ ଭାଇ ବିଦେଶୀ ବସନରେ
(ବିଦେଶୀ) ବସନରେ ବିଳାତି ଫେସନରେ । ଧ୍ରୁବ ।

ପିନ୍ଧି ପରଦେଶୀ ସାଜ   ନମାଡ଼େ କି ତିଳେ ଲାଜ
ପରଘର ଲୁଗାରେ କି ଥାଏ ଭାଇ ସମ୍ମାନରେ । ୧ ।

ବିଦେଶୀ ବେପାରୀ ପୋଷି   ସ୍ୱଦେଶ ଦେଉଛ ନାଶି
ଗାଆଁ-ତନ୍ତୀ ମଲେ ହୋଇ ଅନ୍ନ ବିଣ ହଇରାଣରେ । ୨ ।

ହେଜୁନାହୁଁ କି ଚୁପାପେ   ଘରୁ ଧନ ବହି ଯାଏ
କିଏ କରୁଛି ରକତ ଗୁପତରେ ଶୋଷଣରେ । ୩ ।

ବରଷକେ ଚଉଷଠି—   କୋଟି ଟଙ୍କା ଯାଏ ଲୁଟି
ଅଭାବ ହେଲ ଅନ୍ନକୁ ଅଶନରେ । ୪ ।

ତବ ଅବହେଳା ଯୋଗେ   କି ଦୁଃଖ ଜନନୀ ଭୋଗେ
ଅରହିଛି ପାସ ଦେଇ କଷଣରେ । ୫ ।

ଜନନୀର ଏ ସଙ୍କଟେ   ଆସ ଭାଇ ତା ନିକଟେ
କନୁମାଟି ଋଣ ମୁକ୍ତ ହୁଅ ଥାଉଁ ଜୀବନରେ । ୬ ।

ଜନନୀ ଜଠରୁ ତଳେ   ପହିଲେ ପଡ଼ିଲ ବେଳେ
ଟେକି ଧରିଥିଲା କିଏ କୋଳେ କରି ଆଲିଙ୍ଗନରେ ? ୭ ॥

ସବୁନାହୁଁ ତୋ ଅନ୍ତରେ ଭାଇବନ୍ଧୁ ପରିଜନେ
ଛାଡ଼ିଲେ ତୋତେ ପୁଣି କିଏ ଦେବ ଆଧନରେ । ୮ ।

ଯେ ଲୁଗା ପାଇଁ ଜନମି ହେଲ ଆଜ କଙ୍ଗାଳୁଣୀ
ସେ ଲୁଗାକୁ ବେଗେ ବେଗେ କର ଭାଇ ଦହନରେ । ୯ ।

# ଗୀତ

ରାଗ—ଖମ୍ବାଜ ମିଶ୍ର,   ତାଳ—ଝେମ୍ଟା

(ଯିବ ପାଣିକି ତୋହ୍ନରୁ ଚଲେ, ମରିବ କି ମୁହିଁ କଲବଲେ, ବୃନ୍ଦାରେ)

କହ ନାମ କହ କହ ମୋତେ
କମ୍ପା ବାବୁଆଣୀ ହୋଇଗଲୁ ଏତେ ।
କିଏ ତୋତେ କେଲା କୁହୁକ କରିଲା
କି ଦେଖି ବାଇଆ ହେଲୁ ଏତେ । ଘୋଷା ।

ଚକାଚୁଣୀ ଢଙ୍ଗ କାହୁଁ ତୁ ଶିଖିଲୁ
ବିଲାତି ଫେସନ କାହୁଁ ତୁ ଶିଖିଲୁ
ବଡ଼ାବଡ଼ଙ୍କୁ ତୁ ବେଖାତରି କରି ଭୟ ଭକ୍ତି ନ ରଖିଲୁ ଚିତ୍ତେ ;

ସ୍ୱଜକୁଳ ପଣ ଦେଲୁ ତୁ ବୁଡ଼ାଇ
ଘର କଉଡ଼ିକୁ ଦେଲୁ ତୁ ଉଡ଼ାଇ
ଆରସି ପାନିଆ ସାବୁନ ସେମିଜ ଅତରରେ ବହୁ ଦେଲୁ ଯେତେ ।

ସବୁ ପିନ୍ଧ ପିନ୍ଧ ହେଲୁ ପଛେ ବୁଢ଼ୀ
ନ ଛାଡ଼ିଲୁ କଳ ପିନ୍ଧୁଆଡ଼ ଶାଢ଼ୀ
ହେଉ ଓଯତେ ବୁଢ଼ୀ ଖୋଜୁ ସେତେ ଧଡ଼
ଫୁଲମିକନାର କଣ୍ଠ ବେଢେ ।

କଳସୂତା ପରା ଅଟେ ଅଭେତ
ପିନ୍ଧ ତାକୁ ବେତେ ହେଉଛ ଲଜିତ ।
ଅଶୁଚି କାଯ୍ୟାରେ ଧରମ କରିଲେ ଫଳକି ପ୍ରାପତ ହେବ ତୋତେ ।

ଅରଟରେ ସୂତା କାଟି ଲୁଗା କର
କେତେଦିନ ଆଜ ରହିଁଥିବ ଘର
ବଜାର ହାଟରେ ଲୁଗା କିଣି ଗଲେ ସହସ୍ରାରେ ପାଇବୁକି ସେତେ ।

ନିଜ ବାଡ଼ି କପା ନିଜ ହାତ କଟା
ଝିଅ ବୋହୂର କୁରୁତା ଶାଢ଼ୀ ଦଟା
ରେଜେଇ ତୋଷକ ଚକଅ ମସାରି ହବୁ ସେ ଅରଟ ଦେବ ତୋଟେ

କାହିଁକି ରହୁଛ ଭାଇ ଅଳସେ ବସି ହୋ
ପର ନେଇଗଲା ଧନ ସଭିଠୁଁ କଷି ହୋ । ଘୋଷା ।

ଲୁଣ ଦିଆସିଲି ଛତା — ଲୁଗା କଇଞ୍ଚି ଓ ଜୋତା
ଆରସି ପାନିଆ କ୍ଷୁର — ନକଲି ନାନା ପ୍ରକାର
କାଚ-ଝଙ୍ଗା କାଚମାଳ — ଗହଣା ବେଙ୍ଗି ପିତଳ
ଚେନ୍ ଘଣ୍ଟ ଟ୍ରମ୍ୟଗାଡ଼ି — ଦମକଳ ହାଓ୍ୱାଗାଡ଼ି
(ବାବୁ) ବିଲାତ ଜିନିଷ କିଣି ମନରେ ଖୁସି ହୋ । ୧ ।

(ଏବେ) ଘର ବେଉସା ଛାଡ଼ିଦେଇ — ସହର ଗଲେ ପଳାଇ
ଦେଶର ଜୀବିକା ବୁଡ଼ିଲା — ଏପରି କଲ ମୋଡ଼ିଲା
ପ୍ରମାଦ ଆସି ବଢ଼ିଲା — ଗାଁ ଯେ ଖାଲି ପଡ଼ିଲା
ମୂଲ ମଜୁରି ବଢ଼ିଲା — ନ ଖାଇ ବଂଶ ବୁଡ଼ିଲା
ଏବେ) ଲକ୍ଷ୍ମୀ ଠାକୁରାଣୀ ଚାଲିଗଲେଣି ରୁଷି ହୋ । ୨ ।

ଦେଇ କପଡ଼ା ବିଲାତ — ନିଏ ଜାହାଜ ଭରତ
ଧାନ ଚାଉଳ ଗହମ — ଖାଇବା ସରଞ୍ଜାମ
ଆମେ ମରିଲେ ଭୋକରେ — ଦିନକୁ ଦିନ ଦୁଃଖରେ
ଜିନିଷ ଦର ବଢ଼ିଲା — ଏହା କେହି ନ ବୁଝିଲା
ଜାଣିତ ପାରିଲେ ଗାନ୍ଧୀ ହିସାବ କଷି ହୋ । ୩ ।

ଗାନ୍ଧିବାବା ବାରମ୍ବାର — କଲେ ଅନେକ ପ୍ରଚାର
ଛାଡ଼ ଦିଅ ଅଦାଲତ — କର ଗ୍ରାମେ ପଞ୍ଚାୟତ
ମଦ ଅଫିମ ଗଞ୍ଜାଇ — ନିଶା କରି ଖାଅ ନାହିଁ
ହିନ୍ଦୁ ମୁସଲମାନ ଭାଇ — ଅହିଂସା ଧରମେ ରହି
ନିଜ ଘର ନିଜେ କର — କାହିଁକି ପୋଷୁଛ ପର
ନ ମାନ ସେ କଥା ତାଙ୍କୁ, ଦେଉଛ ହସି ହୋ । ୪ ।

ସତ୍ୟ ପାଇଁ ନମସ୍କାର ଯୁଗେ ଯୁଗେ ଅବତାର
କରନ୍ତି ଧର୍ମ ଉଦ୍ଧାର ଲେଖା ଏ ପବ୍ର ଗୀତାର
ଆମ ଦେଶରେ ଦୁରିତ ହରିବେ ବୋଲି ତ୍ବରିତ
ଅସିଲେ ଗାନ୍ଧୀ ଗୋସାଇଁ ସ୍ୱରାଜ୍ୟ କରିବା ପାଇଁ
(ସେତ) ତୁମ୍ଭଙ୍କ ସହୁଛନ୍ତି ଜେଲରେ ପଶି ହୋ । ୫ ।

---

## ରାଗ—ଝିଞ୍ଜିଟ, ତାଳ—ଏକତାଳି

( ବାଲେଶ୍ୱର ଜନ ସମ୍ମିଳନୀର ୯ମ ଅଧିବେଶନରେ ପଠିତ )

ଶୁଣୁନାହଁ ଶୁଣ ମହାତ୍ମା କା ପାଇଁ କମ୍ମା ଏତେ ଦୁଃଖ ସହୁଛୁରେ
ସହି ସହି ସେତ ପଥର ହେଲଣି ତଳେ ଟିକା ଚେତନା
ନୋହୁଛି ରେ । ଘୋଷା ।

କ ପାଇଁ ଡେଜଣ ଏ ସୁଖ ସଂସାର;
ତୁଚ୍ଛ କଲେ ଯେତେ ଅସ୍ତ୍ର ଅଳଙ୍କାର
ଧନ ସଙ୍ଗେ ଦାର ପୁତ୍ର ପରିବାର ସନ୍ୟାସେ ଆଶ୍ରମେ
ରହୁଛି ରେ । ୧ ।

କେତେ କେତେ ଶିଷ୍ୟ ଅନୁଚର ପୁଣି
ଦେଶ-ସେବୀ ସାଧୁ ସନ୍ୟାସୀ ସୁଗୁଣୀ
ପଡ଼ନ୍ତି ଅନଳେ ମାତା ଡାକ ଶୁଣି ମାତାଦୁଃଖ ତାଙ୍କୁ ଦହୁଛି ରେ ।୨।

ଅପମାନ ଗାଳି ଗୋଇଠା ପ୍ରହାର
ଭୋଗୁଛନ୍ତି ଦଣ୍ଡ କେ କେତେ ପ୍ରକାର
ଖାଇ ସେ ପ୍ରହାର କରନ୍ତି ଜୁହାର ପ୍ରବୋଧି ଯେ ଦଣ୍ଡ ବହୁଛି ରେ ।୩।

ଦେଶବନ୍ଧୁ ଦାସ ଲାଲ ଲଜପତ
ଅଲି ମହମ୍ମଦ ନେହେରୁ ସୌକତ
ଦେଶପାଣ୍ଡେ ଦେଶଭକ୍ତ ପ୍ରତିଶ୍ରୁତ ଯାବତ ଦୁଃଖ ନ ଯାଉଛି ରେ ।୪।

ନିଜଲାଗି ନୁହେ ସାଧନା ଯାହାର
ପର ମୁକତିରେ ମୁକତି ଯାହାର
ଅହିଂସା ଯାହାର ସଦା ଗଳାହାର, ତା ଦେହେଁ କି ରକ୍ତ ବହୁଛି ରେ ॥

ମାନବତା ପ୍ରୀତି ଯା'ର ମୂଳମନ୍ତ୍ର
ଜାତୀୟ ଗୌରବ ଯା'ର ଏକତନ୍ତ୍ର
ଧର ସେ ଅସହଯୋଗ ବାଣୀ ଯନ୍ତ୍ର ସ୍ୱାଧୀନତା ସୂତ୍ରର ଗାଉଛୁ ରେ ।୭।

କୃପାମୟ ନିରଞ୍ଜନ କୃପାକର
ଝରୁ ବସୁଧାକୁ ସୁଧା ସୁଧାକର
ଶୁଖାଇ ଦିଅ ମା' ସନ୍ତାପ ସାଗର ଦୀନ ଦୁଃଖୀ ଗୀତ
ଗାଉଛୁ ରେ । ୭ ।

ତାଳ—କର୍ଣ୍ଣାଲ

( ମନରୁ ମାନ ତେଜ ମାନିନୀ ବୃତ୍ତରେ )

ଜନମି ଜନ୍ମଭୂମି ଜୟନ୍ତି
ସଦୟେ ଦେନ ମୋ ମିନତି । ଧ୍ରୁବ ।

ଜନମି ତୋ କୋଳେ କେତେ କେତେ ଅଳି କଲି ମାଗୋ ବସୁମତି
ଯେତେ ଖେଳ ନାଟ କଲି ତୋ ଗାତରେ ସହିଛୁ ତୁ ବୁକୁପାତି
ତୋ ପରି ମା ମୋତେ କାହୁଁ ମିଳିବ
ମୋ ଦାଉ ଏତେକ କିଏ ସହିବ । ୧ ।

ଗରଭଧାରି ମା ଜନମ ଦେଇଛୁ ତୁ ଦେଇଛୁ ମୋ କରମ
ତୋ ଅନୁରାଗେ ମୁଁ ଆଜନମ ସୁଖୀ ତୋ ବିରାଗେ ବୁଦ୍ଧି ବାମ
ପାଇବି ଗାଇ କି ଗୋ ମା ତୋ ଗୁଣ
ପାରିବି ସୁଝିକି ତୋ ଋଣ । ୨ ।

ମୋ ଦୁଃଖରେ ତୋର ପରାଣ କାନ୍ଦୁଛୁ ଦେଖି ଫାଟିଯାଏ ହିୟା
ବୁଦ୍ଧି ଦିଶୁନାହିଁ ବଳନାହିଁ ଦେହେଁ ନାହିଁ କେହି ମୋର ସାହା
ସତେକି କରୁଣା କରିବେ ଗୋସାଇଁ
ତୋ ଲାଗି ଧନ ମନ ଦେବି ଲଗାଇ । ୩ ।

ତୋ ସେବାରେ ଜୀବନକୁ ଦେଲେ ବଳି ଖୋଇବି ପରି କି ରଣ
ପତିତ-ପାବନ-ବାନା ଜଗନ୍ନାଥ ପାପ-ତାପ ନିବାରଣ
ଅଧମେ କରିବେ ପରି କରୁଣା
ଦୁଷିବ ପାପ ତାପ ଯାତନା । ୪ ।

## ରାଗ—ହାମ୍ବୀର, ତାଳ—କାହାରବା

ଦେଖ କି ହାଲଅ ବନ୍ଧୁଗଣ ସାରା ଜଗତେ
କି ନବୀନ ସ୍ରୋତ ଭାସିଗଲା ଭାରତେ । ଘୋଷା ।

ଭାବ ଯା ନଥିଲେ ମନେ          କେହୁ ଯା ନଦେବେ ସ୍ୱପନେ
କି ମନ୍ତ୍ର ମୋହିବ ଜନେ          ଉଚ୍ଚାଟେ ଅତି ଗୋପନେ
ପାଗଳ ପରାଏ ମୂଢ଼ ମାତିବେ ସତେ । ୧ ।

ଅସହଯୋଗ ମନ୍ତ୍ରର          ମାତିଲା ସାରା ସଂସାର
ହିଂସାକୁ ବରଜି ଦୂରେ          ଅହିଂସା କଲେଣି ସାର
ତେଜିଲେଣି ଅସ୍ତ୍ର ବୀରେ ରହୁ ସଂଯତେ । ୨ ।

କଳଯନ୍ତ୍ରେ ଜରମାନୀ          ଜମାଇ ଥିଲା ମେଦିନୀ
ସେ ଆଜି ଅସହଯୋଗେ          ହେଲା ଦେଖ ଉଦାସିନୀ
ମିଶର ଆଫ୍ରିକା ଆମେରିକା ସଙ୍ଗତେ । ୩ ।

## ରାଗ—ବେହାଗ ଖମ୍ବାଜ, ତାଳ—କାହାରବା

( ବାଲେଶ୍ୱର ଛାତ୍ର ସମ୍ମିଳନୀର ୨ୟ ଅଧିବେଶନ ବସ୍ତାଠାରେ )

(ଦେଖ) ଧୀରେ ଧୀରେ ଧୀରସମୀରେ ଉଡ଼େ ଜାତୀୟ ପତାକା ଅଜ
ଜାତୀୟ ଜୀବନ ଗୌରବ ବିଭବ ଅରୁଣ ଅଙ୍ଗେ ଅଛି ସାଜି । ଧ୍ରୁବ ।

ଗାନ୍ଧୀ ଜୀଉ ପ୍ରେମେ ଖେଳିବୁଲେ ଟୂନେ୍ୟ ସମ୍ମିଳନୀ-ବେଦୀ ପୁଣ୍ୟେ
ସ୍ୱାଧୀନ ଭରତ ସୁନ୍ଦର ସୂଚିତ ହେଉଛି ଏ ଶୁଭ-ଦିନେ ରାଜି । ୧ ।

ରଙ୍ଗ ଲାଲ ଶ୍ୱେତ ସବୁଜ ମେଳେ ଉନ ହେଉଛି ସେ ଭଳେ ୨ ଚିହ୍ନି
ହିନ୍ଦୁର ଲୋହିତ ଇତର-ଧର୍ମ ଶ୍ୱେତ ମହମଦିଆନ ସବୁଜ । ୨ ।

ଧନ୍ୟ ସୁନ୍ଦର-ବାନା ଗର୍ବ ରଖିଲ ଠେକ ଜବ୍ବଲପୁରେ ବିରାଜି
ତୋର ସୁନ୍ଦର ମାଧୁରୀ ମୂରଖ ଧ୍ୱଂସକାରୀ ସହି ନପାରିଲ ପାପ ପାଜି

କ୍ଷୁର୍ଣ୍ଣ ନ ହେବ ଯେଣୁ ତଳେ ତୋହର ମାନ ଭରତ ଜାତି ପତାକା
ଉଡ଼ାଇ ଘରେ ଘରେ ଦ୍ୱାରେ ରାଜପଥେ ଶାନ୍ତି-ଯୁଦ୍ଧ ଦେଲେ ସାଜି ।୪।

(ବାଲେଶ୍ୱର ଜିଲା ସମ୍ମିଳନୀର ୩ୟ ଅଧିବେଶନ, ଜଳେଶ୍ୱର)

ତାଳ—ଏକତାଳ

ଅଛୁଆଁ ଦୋଷ ମହାପାପକୁ ଉଠାଅ ଭାଇ
ଅଛୁଆଁ ଛୁଁଆ ଜାତ ପ୍ରମାଣ କାହିଁରେ ନାହିଁ । ଘୋଷା ।

ସ୍ମୃତି ପୁରାଣ ବୋଲି ଜଗତେ ଯାହାକୁ କହି
ସେହି ବଦଳେ ଦେଶ ଅବସ୍ଥା ସମସ୍ତ ନେଇ । ୧ ।

ବେଦ ବୋଲି ଯା' ରଚିଲେ ନିଜେ ଜଗତସାଇଁ
ଉଚ୍ଚ ନୀଚ ଜାତି ଭେଦାଭେଦ ନ ଭଣେ ତହିଁ । ୨ ।

ଉଚ୍ଚ-ଜାତି ବୋଲି ଯାହାଙ୍କର ଗରବ ଥାଇ
ନୀଚ କର୍ମ କରୁଥାନ୍ତି ଉଚ୍ଚ ହୋ'ନ୍ତି ବୋଲାଇ । ୩ ।

ପାଞ୍ଚ କୋଟି ଭାଇଙ୍କୁ ରଖିଛ ତଳେ ପକାଇ
ଶ୍ୱାନ ଶୃଗାଳ ମାର୍ଜାରଠାରୁ ହୀନ କରାଇ । ୪ ।

ନୀଚ ଅଧମ ଯେତେ ହେଲେ ସେ ଆମ୍ଭର ଭାଇ
ଘୃଣା ନକର ଉତ୍ତମ କଥା ଶିଖାଅ ନେଇ । ୫ ।

ନିଜ ଭାଇଙ୍କୁ ସମାନଭାବେ ଦେଖିଲ ନାହିଁ
କେମନ୍ତେ ବିଦେଶୀଁ ଦାବୀ କର ସମତା ପାଇଁ । ୬ ।

## ରାଗ—ଭୈରବୀ, ତାଳ—ଖେମଟା

( ସୁର, ହରି ହରି ବଲଲେ ଯେବେ ହରି କି ଆସେ, ବୃନ୍ଦେ )

ଖାଲି ହାଁଗା ହାଁଗା କାନ୍ଦିଲେ ତୋର ଦୁଃଖ କି ଯିବ
ଭଲ ଭଜ ମଲେ ସୁଖ କାହୁଁ ମିଳିବ । ଘୋଷା ।

ବାରେ ବାରେ କଲେ ହରି ବାରି କି ପଡ଼ିବ ଘରେ
(ଜନ-ମନ) ହରି ହରି ଡାକିଲେ ସତେ ହରି ଆସିବ ।୧।

ଗୁଣୁ ଗୁଣୁ କଲେ ଭଅଁର ପୂରିବ କି ତାର ଉଦର
(ସେ କି) ଫୁଲ ଫୁଲେ ନ ଗଲେ ଉଡ଼ି ମଧୁ ପାଇବ । ୨ ।

ମଲି ମଲି ଦେଲେ ଡାକ କଏ ସେ ପଶିବ ପାଖ
ଠେଲି ଠେଲି ଦେବେ ଠକ, (ଯଦି) ପାଲେ ଧଡ଼ିବ । ୩ ।

ନାଆଁ ଦେଖି ମାଇଲେ ଡଆଁ ତୋ ଆଗେ ହୋଇବ ଠିଆ
ନାଚ ଦେଖା ସବୁ ଦୁନିଆ ରଙ୍ଗ ଦେଖିବ । ୪ ।

ହେବ ହେବ ଝାଳିବୁ ଯେତେ ପଞ୍ଚକୁ ତୁ ଭାଳିବୁ ସେତେ
ଜୀବ ଯିବ ଯେତେବେଳେ (ଅନ୍ତ) କିଛି ନଥିବ । ୫ ।

ଧାମିଁକୁ ତୁ ପରପର ପରକି କରିବ ଘର
ମର ମର ହେଲ ବେଳେ (ଯାଇ) ମର ଲୁଚିବ । ୬ ।

କରିଂ କରି ଚର-ଗୋଲମି ସହିଲିଣି ଦେଇ ସଲାମି
ଥରେ ଥର ଅଥଯୁ ଶେଷେ ସାହା ଉଡ଼ିବ । ୭ ।

ଯେତେ କିଛି ବାବୁ ବାବୁ ବାବୁ କି ଛାଡ଼ିବ କାବୁ
କି ଉପାୟେ ନେବ ସବୁ ଝାକ ବସିବ (ସେ) ବାବୁ । ୮ ।

ଝାଣ ଝାଣ ଏବେ କଥା କହିବାକୁ ନାହିଁ ତୋ ମଥା
ନଇଁଛୁ ଯା ଚରଣତଳେ (ତୋ) ମଥା ସେହି ଲୁପିବ ।
ନିଜ ଗୋଡ଼େ ନହେଲେ ଠିଆ କଏସେ କରିବ ଠିଆ
ହିତ ଶୁଣି ଅହିତ କଲେ କଏ ଟେଭ୍ରଗିବ ( ଡୋଳଗି )
ହାମୁଡ଼ୁ ହାମୁଡ଼ୁ ହୁଅ ନିଜ ଗୋଡେ ଉଠି ଠିଆ
ରୁଲ୍ଲ ରୁଲ୍ଲ ଧୀରେ ଧୀରେ ପଗ ଧାଇଁବ । ୯ ।

## ରାଗ—ପିଲୁବାରୁଆଁ, ତାଳ—ଏକତାଳି

( ସେ କି ସହଜେ ମିଳିବା ଧନରେ, ତାଙ୍କୁ ଅଳପେ
ପାଇବୁ ଧରି, ବୃଥାରେ )

ତଳେ ହେଲେ ଖାଲ ବୁଝିଲୁ ନାହିଁରେ, ଯେତେ କହିଲି ବୁଝାଇ
ବୁଝିସୁଝି ଯେହୁ ଅବୁଝା ହୋଇବ, ପାରିବ କେ ସମଝାଇ । ଯୋଷା

ଚେଇଁ ଶୋଇଥିବା ଲୋକକୁ ସହଜେ, ଉଠାଇ ପାରିବ ନାହିଁ
କପାଳ ଫାଟିଲେ ବିଧି ବାମ ହେଲେ, ସୁବୁଦ୍ଧି ଦିଶଇ ନାହିଁ । ୧ ।

କାହାଯୋଗେ ଆଜ ଭରତ ଭରନ୍ତ, ପୂଜୁନ୍ତି କାହାକୁ ମହା
ତ୍ୟାଗୀ-ଯୋଗୀ ମହାପୁରୁଷ ମୋହନ, କି ମନ୍ତ୍ରରେ ଦେଲା ମୋହି ।୨।

କିଏ ଛୁରିଖାର କଲା ଏ ଦେଶକୁ, କିଏ ବୋହି ନିଏ ଧନ ବିଦେଶକୁ
କି ଉପାୟେ ଧନ ସ୍ୱଦେଶେ ରହିବ, କିଏସେ ଦେଲା ବତାଇ । ୩ ।

କାରାଗାରୁଁ ସେତ ଆସିଲେଣି ଫେରି, ଆନନ୍ଦେ ମାତିଛ କରି ଜୟ ହରି
ଜୟ ଶବଦେ କି କଷଣ ବୁଝିବ (ମନ) ପ୍ରାଣ ନ ଦେଲେ ଲଗାଇ । ୪

## ଗଜଲ—ତାଳ ମଧ୍ୟମାନ

( ମୁଁ ବୀଣା ସେ ତାର, ଛନ୍ଦିର ମୁଁ ସ୍ୱର ସେ ସ୍ୱର-ଝଙ୍କାର, ବୃତ୍ତେ )

କାହିଁକ ଅଳସେ ଭାଇ ବଳାସେ ମାତଛ ଯାଇ
ଆମୋଦେ ପ୍ରମୋଦେ ମାତି ଦେଉଛ ଜୀବନ କଟାଇ । ଘୋଷା ।

ଆନନ୍ଦ ଖେଳ କଉତୁକେ ଭୁଲିତ ଯାଉଛ କୁହୁକେ
ଉଚିତ କିସତି ତୁମ୍ଭର ଏ ସନ୍ଧି ସମୟେ ଥାଇ । ୧ ।

କା'ପାଇଁ ମହାତ୍ମା ଗାନ୍ଧୀ ସାଦରେ ହୋଇଲେ ବନ୍ଦୀ
କା'ପାଇଁ ହଜାର ହଜାର ମାତଲେ ମାତାଲ ହୋଇ । ୨ ।

ନ ଦେଲେ କାଠ କାଟିବାକୁ ଗୁରୁଙ୍କ ସେବାଇ ଶାଳକୁ
ଅକାଳୀ ଭାଇଏ ମିଳି ଦେଲେ ଶାନ୍ତି ରଣ ଚଳାଇ । ୩ ।
ପତାକା ଉଡ଼ାଇ ଦେବାକୁ ବାରଣ ହୋଇଲା ଯାହାଙ୍କୁ
ନ ମାନି ସେ ବାରଣ ଶିରେ ଦେଲେ ସେ ବାନା ଉଡ଼ାଇ । ୪ ।

ଘୋରଷ ତେଲ ନାକେ ଦେଇ ଅନ୍ଧାରେ ଅଛ ନିଦେଇ
(ହା) ଆପଣା କୁକରମ ଫଳ ଆନ କେହି ଭୋଗିବ ନାହିଁ । ୫ ।

## କୀର୍ତ୍ତନ-ସୁର, ତାଳ—ଏକତାଳ

( ଆମାରେ ସୁଧାନାଥ କ ନିର୍ଦ୍ଦୟ ହଇଲ ବୁଝି ପାତକୀ
ବଲେ ନା ଉଦ୍ଧରିଲେ, ବୃନ୍ଦରେ )

ଆସ ଉତ୍କଳ ରମଣୀ ସକଳେ, ଡାକୁଛନ୍ତି ମାତା ପରା ବିକଳେ
ସକଳ ଦେଶନାରୀ ଆସିଲେଣି ବାହାରି ସେ ପ୍ରତିଜ୍ଞା କରି
ଦେଶ ସେବାରେ ପ୍ରାଣ ଦେବେ ଏ ସଙ୍କଟକାଳେ
( ଜନନୀର ସଙ୍କଟ କାଳେ )
ଚିର କୀରତି ଥିବ ମହୀତଳେ । ୧ ।

ଯେଉଁ ଶକତି ମଠେ ଲଗ ମା’ ଦେଶବ୍ରତେ ଯାଉଛ ମରତେ
କେହୁ ଧନ କେହୁ ପ୍ରାଣ କେହୁ ଅବା ଆନବଳେ (ମା)
ସହାୟ ହୁଅ ମାଜ ମନବମଳେ । ୨ ।

ହେଲଣି ହତଶିରୀ ଭାରତ ସୁନାପୁରୀ ସେ ସୁଖ ସାର
ଘୋର ଅଧର୍ମ ପଡ଼ି ସେ ଗଲ ପାପ-ପଙ୍କେ ସଢ଼ି
ସେ ଗଲ ରସାତଳେ ବୁଡ଼ି
ଗ୍ରାସେ ଦୁର୍ଭିକ୍ଷ-ରାକ୍ଷସ କବଳେ । ୩ ।

ଗୃହର ଲକ୍ଷ୍ମୀ ହୋଇ ଗୃହେ ରହୁଛ ଶୋଇ ମା’ ଅଚେତ ହୋଇ
(ତେଣେ) ପାପ-ନିଆଁ ଜଳିଣ ଦହୁଲଣି ଦେଶ ପୁଣ (ମା)
ଜଳାଲଣି ସୁନା-ସିଂହାସନ ତଳେ । ୪ ।

ତୁମ୍ଭ ଯୋଗେ ଘର-ସୁନା ତୁମ୍ଭ ବିନା କଳାବନା, ନ କରୁଛ ଚେନା
ତୁମ୍ଭ ଆଳସ୍ୟ ବିଳାସେ ଅନାହାର ଦେଶେ ଦେଶେ
ବସ୍ତ୍ରହୀନ ହୋଇ ମଲେଣି ଆକୁଳେ । ୫ ।

ରକ୍ଷିବ ଯଦି ମହତ୍ତ୍ୱ ରଖ ଦେଶର ସତ୍ତ୍ୱ ମା’ ହୋଇ ଆପ୍ତ
ଅରଟ ବୁଲାଇ ଘରେ ସୂତା କାଟି ଚରଖାରେ
ବିବାଦ କଳହେ ନ ମାତ ବିଫଳେ । ୬ ।

ଅଳଙ୍କାର ଜୀବନକୁ ତୁଚ୍ଛ କରିଦିଅ ତାକୁ ଯେ ଯାହା ମନକୁ
ଦାନ କର ଦେଶ ହିତେ ସେ କରୁ ସବୁ ଦେଶ ଅର୍ଥେ
ସ୍ୱରାଜ୍ୟ ନହେଲେ ଆଜନ୍ମ ନରକେ । ୭ ।

ରାଗ—ଇମାନ ଭୂପାଳି, ତାଳ-ମଧ୍ୟମାନ ।

( ମନ ମନ୍ଦିରେ ଦେଖ ଆଜ ମା ମୂରତି, ବୃନ୍ଦାବନେ )

[ ଭାରତ ଜାତୀୟ ମହାସଭା ବା '**କଂଗ୍ରେସର**' କୋକନାଡ଼ା
ଅଧିବେଶନରେ ଗୀତ ] ।

ଜୟ ଭାରତ ଜନନୀ ତୋ ଚରଣେ ନମଃ,
ଜୟ ଉତ୍କଳ ଜନନୀ ତୋ ଚରଣେ ନମଃ,
ଜୟ ଜୟ ଗାନ୍ଧିଜୀଙ୍କ ଚରଣେ କୋଟିଏ ନମଃ । ଘୋ

ଧନ୍ୟ ପୁଣ୍ୟଭୂମି ଭାରତ ମାଇ
ଧର୍ମ ବୁଦ୍ଧି-ବଳେ ସଂସାର ସାଇଁ
ତୁଳ୍ୟ ପରଶ୍ରମଣି ଜଗତେ ନାହିଁ
ଖଣିଜ ଶିଳପେ ବଣିଜେ କଳପେ କଳପେ ପରମ । ୧ ।

ଆୟୁର୍ଜ୍ୟୋତିର୍ଧନୁର୍ବେଦ ବିଧାତ୍ରୀ
ରାଜନୀତି ବୈଜ୍ଞାନିକ ଶାସ୍ତ୍ରୀ
ବୀରଇନ୍ଦୁ ସୁଧାସିନ୍ଧୁ ଧରିତ୍ରୀ
ଶିଖପ୍ରସବିନୀ ସମର ରଙ୍ଗିଣୀ ନାୟିକା ଉତ୍ତମ । ୨ ।

ଉଣାନୁହେଁ ଲବେ ଉତ୍କଳ ମାତା
ବଳେ କଳେ ଯହିଁ ଜଗତ-ତ୍ରାତା
ଉଡ଼ାଇ ବଇଜ୍ଞ ଭାରତ ଛତା
ହୃଦୁ ମଥାମଣି ତୀର୍ଥର ଅଗ୍ରଣୀ ବଇକୁଣ୍ଠ ସମ । ୩ ।

ଗାନ୍ଧିଜୀଉ ଗୁଣ ଅନନ୍ତ ଅପାର
ନୃ[illegible]ନ୍ତି ମତାଇଛନ୍ତି ସଂସାର
ଜଗତ ଶିଖୁଛନ୍ତି ତ୍ୟାଗ ଯାହାର
ଦର୍ଶନ ବନ୍ଧୁନେ ମା ନାମ ଶ୍ରବଣେ ଗରମ ନରମ । ୪ ।

କାଫିନସୁର — ତାଳ-ଝମ୍ପ ।

( ଯମୁନେ ତୁମି ସେଇ ଯମୁନାର ପ୍ରବାହିନୀ, ସୁରରେ )

ବାଲେଶ୍ୱର ଜିଲା ସମ୍ମିଳନୀର ୨ୟ ଅଧିବେଶନର

ବସ୍ତାଠାରେ ଗୀତ—

କେଉଁଠି ରହିଲ ଯାଇ ହୃଦୟସାଇଁ ହେ ଗାନ୍ଧି ଗୋସାଇଁ ।
ରହିଲ କେଉଁ ଗୋପନେ ପଶୁବନ୍ଧନେ, ଶ୍ରୀଅଙ୍ଗ ମୁଖକୁ
ଦେଲ ଲୁଚାଇ । ଧ୍ରୁ ।

ଆଖିପାଣି ଆଖିରେ ମରି କାନ୍ଦି କାନ୍ଦି ଗଲଣି ସରି
ଡାକୁଅଛୁଁ ହୃଦୟଭରି, ସେ ଡାକକ କାନକୁ ଶୁଭଇ ନାହିଁ
ବସିଅଛୁଁ ବାଟ ଅନାଇ ସେ ମିଥ୍ୟାଦ ଗୃହିଁ,
ଗଣି ଗଣି ଦିନ ସରିଲା ନାହିଁ । ୧ ।

ବରଷେ ବରଷେ ଅନାଇ ମନଆଶା ପୂରିଲା ନାହିଁ ,
ଦିନୁଁ ଦିନୁଁ ବଢ଼ିଗଲା ବ୍ୟଥା ଛୁଟିଗଲା ମଥା ପାପ ବୋଝରେ
ତୋହ ବିନା କାହା ସାଧନା ପ୍ରଜା ବାସନା ପୂରାଇବ ଭେଦି
ମହୀରେ ନାହିଁ । ୨ ।

ବାଳ ବୃଦ୍ଧ ଯୁବା ଯୁବତୀ ତୁମ୍ଭ ନାମ ହୃଦୟେ ଚିନ୍ତି
ଉପବାସ ଉପାସନା ବ୍ରତ କାଟୁଛନ୍ତି ଧ୍ୟାନ ବିଶ୍ୱାସେ ରହି
(ତୁମ୍ଭ) ନାମ ଅଟେ ବେଦର ସାର ତାର ନାହିଁ ବିଚାର
ସରକାର ଡରେ ନ ଭୁଲେ କେହି । ୩ ।

ତପୀ ଜପୀ ଯୋଗୀ ବାବାଜି ସାଧୁ ସନ୍ଥ ସନ୍ତୃଛାନ୍ ଫାଜି
ଚୋର ଖଣ୍ଡ ନଶାଖୋର ଠାଉଠର ପୁଣି ଭେଟେ ମାମଲବାଜ
ଯିଏ ଯେତେ କରୁ ଗରବ ସେ ହୁଏ ନୀରବ ନାମ ଶୁଣି
ମୂକ ବାଗ୍ମୀ ହୋଇ । ୪ ।

ଆମ୍ଭ ଲାଗି ଲେଙ୍ଗୁଟି ପିନ୍ଧା ଆମ୍ଭ ଲାଗି ବନ୍ଧନେ ବନ୍ଧା
ଆମ୍ଭ ଲାଗି ଧନମନ ପରିବାର ତେଜି ହେଲ ମୁକ୍ତ ସନ୍ୟାସୀ
ଋଷି ମନେ ପାପ ବିଚାର ସେ ଦଣ୍ଡ କଠୋର ଶିରେ ନେଲ
ଚଢ଼େ ଶରଧା ବନ୍ଧୁ । ୫ ।

ତପୀବର ତପର ବଳ ଭାଙ୍ଗିଦେବ ଲୁହା ଶିକୁଳି
ଫିଟିଯିବ ବନ୍ଦୀଘର ଦ୍ୱାର ଖସିବ ପଥର କାନ୍ଥ ପାଚେରି
ସତେକି ଆସିବ ଫେରି ମୋ ହୃଦ ବିହାରୀ
ରାଜସିଂହାସନେ ବସିବାପାଇଁ । ୬ ।

## ତାଳ—ମନ୍ତ

( ଶ୍ରୀରାଧା ବାତୁଳୀ ପ୍ରେମରସାତୁଳୀ, ବୃତ୍ତରେ )

ବାଲେଶ୍ୱର ଜିଲା ସମ୍ମିଳନୀର ବସ୍ତ୍ରା ଅଧିବେଶନରେ ଗୀତ।

ଅହେ ଗୋପବନ୍ଧୁ ଉତ୍କଳର ବନ୍ଧୁ ଉତ୍କଳକୁ ଛାଡ଼ିଗଲ କାହିଁ ।
ଆଉକି ଏଦେଶେ ଫେରିବ ନାହିଁ ହେ ତୁମ୍ଭଙ୍କ ମୁଖ ଚାହିଁବ ନାହିଁ
ତୁମ୍ଭ ଭାଇ ସବୁ, ବିଚ୍ଛେଦ ଦୁଃଖରେ ପ୍ରାଣେହୀନ । ୧ ।

ତୁମ୍ଭଲାଗି ତରୁଲତା ଉପବନ ନଦୀ ନିର୍ଝରଣୀ ସାଗର ପବନ
ପର୍ବତ କାନ୍ତାର ଉପର ପ୍ରାନ୍ତର ଝୁରୁଛନ୍ତି ତବ ଗୁଣ ଗୁଣି
ଗୁଣସାଗର ହେ,
କେ ଅଛି ତୁମ୍ଭର ଜଗର ହେ । ୩ ।

ତୁମ୍ଭେ ଏକା ଉତ୍କଳର ବୀରପୁଅ ତୁମ୍ଭ ଲାଗି ସେହୁ ବୀର ମାତା।
ସହଯୋଗ ଛାଡ଼ି ଦେଖାଇଲ ବାଟ ହେଲ ଏ ଦେଶରେ
ଗାନ୍ଧିଶିଷ୍ଟ, ଅହେ ତ୍ୟାଗବୀର
ତ୍ୟାଗ ତୁମ୍ଭ ପ୍ରାଣ ମୂଳାଧାର । ୪ ।

ଅମ୍ଭେ କ ବୁଝିବୁଁ ତୁମ୍ଭ ହୃଦମନ ବୁଝିଥିଲେ ପୁରୀବାସୀଗଣ
ଦୁର୍ଭିକ୍ଷ ଦାଉରେ ଯାଉଥିଲେ ମରି ଥିଲ ଯେ ଉଦ୍ଧାର
ବୁଦ୍ଧିବଳେ, ରଙ୍କରତନ ହେ
ରଙ୍କପାଇଁ ତୁମ୍ଭ ଜୀବନ ହେ । ୫ ।

ସେ ଶାନ୍ତ ମୂରତି କମନୀୟ କାନ୍ତି କଉତୁକମୟ ମଧୁଭାଷ
ଶୁଣିଛୁ ଯେ ଥରେ ଭୁଲିବାଟି ଦୂରେ ମନେ ପଡ଼ିଗଲେ
ମାଡ଼େ ହସ, ରହସାଗର ହେ
ଭକତ ରସିକ ନାଗର ହେ । ୬ ।

ବଂଶୀଗୀତେ ଯେବେ ଗ୍ଲାଉଲ ଉଜ୍ଜ୍ୱଳ କହିଗଲ କେତେ ମନକଥା
ସେ ଶବ୍ଦାସ୍ୱବାଣୀ ହୃଦଦେଲ ହାଣି, ମରମେ ମରମେ ଦେଲ ବ୍ୟଥା
ଦାଣ ଅପଣେ ହେ
ତୁମ୍ଭଭଳି ନାହିଁ କେହି ଜଣେ । ୭ ।

## ଚାଲ ଝୁଲ ।

( କାହିଁକି କହୁଛୁ ମନା ମୋ ଗଲାଗଣ୍ଡି ଧନରେ, ନୃତ୍ତରେ )

ବୃଥା ସନ୍ଦେହରେ ପଡ଼ି କହିଗଲ ତୋ ଦନ
ସ୍ୱରାଜ୍ୟ ହେବ ପରତେ ନ ଯାଉଛି ତୋ ମନ । ଘୋଷା ।

ନାକେ ମହାତ୍ମା ମୋହନ ବନ୍ଦୀଘରେ ବନ୍ଧନ
ତିରିଶ ହଜାର ତ୍ୟାଗୀ ପାଉଛନ୍ତି କଷଣ
(ଏଥି) ନଥିଲେକି ସନ୍ଧି
(ମିଛେ) ହେଉଥାନ୍ତେ ବନ୍ଦୀ
କହୁଥିଲେ ଆମ୍ଭ ତେଜ କର୍ତ୍ତା ଦଣ୍ଡ ବିଧାନ । ୧ ।

ବିଦେଶୀ ବେପାରୀ ସିନା ଦେଲେଣି କେତେଦିନୁଁ
ସ୍ୱଦେଶୀ ଲୁଗା ଆଦର ବଢ଼ଇ ଦିନୁ ଦିନୁଁ
(ଦେଖ) ବରଷକେ ଅଧେ
(ଧନ) ରହିଲକି ଫନ୍ଦେ
କପାଗଛ ଅରଣ୍ୟରେ ଅଧେ ହେବ ପୂରଣ । ୨ ।

କେତେ ପାଦ କେତେ ମନ୍ତ୍ରୀ ହେଲେଣିତ ଉଚ୍ଛନ୍ନ
ସହଯୋଗୀ ଭାଇଙ୍କର ମାନଗଲଣି ମନ
(ସେ) ବଳେ ବଳେ ଆସି
(ସଙ୍ଗେ) ଗଲେଣିତ ମିଶି
ଜମାକୁ ଖରଚ ବଳ ପଡ଼ୁଛି ଦିନୁ ଦିନୁଁ । ୩ ।

ଦେଖିଲ ଜଗତ ଯାହା କରଗଲେ ଅକାଳୀ
ଅବିଶ୍ବାସୀ ଭ୍ରଇ ମୁହେଁ ଲଗିଲା ଚୂନକାଳି
(ଗାନ୍ଧି) ମୋହନ ମନ୍ତ୍ରର
(ବୁଦ୍ଧି) ହେଲେଣି ପଥର
ଧରମ କରମ ଲଗି ସହ ନାନା କଷଣ । ୪ ।

(ଉତ୍କଳ ପ୍ରାଦେଶିକ ସମ୍ମିଳନୀ ୧ମ ଅଧିବେଶନ, କଟକଠାରେ ଗୀତ)

ରାଗିଣୀ—ଖମ୍ବାଜ ମିଶ୍ର, ତାଳ—ଏକତାଲି

କେତେଦିନ ଆଉ ଦୁଃଖିନୀ ଜନନୀ ଅମିତ ଯାତନା ସହିବ,
ଦୁଃଖ ସହିବାକୁ ଦୁଃଖିନୀ ଲଲଟେ ଲିହିଥିଲ ବିଧା ଦଇବ । ପଦ ।

କର ଦେଇ ଦେଇ ସାରିଛୁ ସମ୍ବଳ
ମାଡ଼ ଖାଇ ଖାଇ ହରାଇଛୁ ବଳ
ଆହା ବୋଲିବାକୁ ସାହା କେହି ନାହିଁ କାହା ଆଗେ
ଦୁଃଖ କହିବ । ୧ ।

ପଞ୍ଜାବ କାହାଣୀ ଶୁଣୁଥିଲୁ କାନେ
ଜନନୀର ଲୀଳା ଦେଖୁଛୁ ନୟନେ
ଶତ ଅତ୍ୟାଚାର ଜନନୀର ଭୁଲେ ପଞ୍ଜାବକୁ ସରି ହୋଇବ । ୨ ।

ଜନନୀ ରାଇଜ ଜମିଦାରୀ ଘର
ଏତେ ଅତ୍ୟାଚାର ଏତେ ବଳାତ୍କାର
ହୋଇଥାନ୍ତା ଯଦି ମହୀଶୂର ଜୟପୁର କି ହୁଅନ୍ତା କଏ କହିବ । ୩ ।

ଅତ୍ୟାଚାରୀ ନର ପିଶାଚ ମାନସ
ଅତ୍ୟାଚାରେ ସିନା ଲଭଇ ସନ୍ତୋଷ
ପାପୀ ପାପ-କର୍ମ ଯେବେ ନ କରିଲେ ଆହାର କି ତାକୁ ରୁଚିବ । ୪ ।

ଦୁଃଖ ସହି ସହି ଜନନୀ ରମଣୀ
ଅହଲ୍ୟା ସୁନ୍ଦରୀ ହୋଇଲା ପାଷାଣୀ
ନାହିଁକି ଭାରତେ କେହି ବୀର ରାମ-ପାଦ ପରଶେ ଉଦ୍ଧାରିବ । ୫ ।

ତା ଦୁଃଖ ଫେଇବା ପାଇଁ ଗୋପବନ୍ଧୁ
ଉତ୍କଳର ପ୍ରାଣ ଦୀନଜନ ବନ୍ଧୁ
ବନ୍ଧି ନେଲେ ଘାର୍ଦ୍ଦ କାରାଗାର ଦଣ୍ଡ ନାହିଁ କେହି
ଏହା ଦେଖିବ । ୬ ।

ନାହିଁକ ଜଳିଲେ ଦଣ୍ଡି ଅକାଳୀ
ବାଇବାକୁ ଯାର ବାଇଦ କାହାଳୀ
ହୁଅନ୍ତା ଦାନକେ ନାଗପୁର ନାଭ ଗୁରୁଦ୍ୱାର ମଧ୍ୟ ଅଦ୍ଭବ । ୭ ।

(ବାଲେଶ୍ୱର ଜିଲା ସମ୍ମିଳନୀର ୧ମ ଅଧିବେଶନ
ବାଲେଶ୍ୱରଠାରେ ଗୀତ)

ରାଗ—ପିଲୁବାରୁଆଁ, ତାଳ—ଏକତାଳି

ଆସ ଚଳବା ହେ ବଦାଯ୍ୟ ଶୁଭ-ସଂଗୀତ ଗାଇ
ଜୟ ଭାରତ ମାତାର ଜୟ ଜୟକୁ ଗାଇ । ଧ୍ରୁବ ।

ଜୟଗାନେ ମୁଖରିତ ଜଗତ ଜୟଗାନେ ଉଲ୍ଲସିତ ଭାରତ
ଗଗନ ଅବନୀ ସିନ୍ଧୁ ସହିତ ମରୁତ ଲଗାଇ । ୧ ।

ଜୟଗାନ ଆଜ ଭୂଧର ଗାଉଛି ପ୍ରତିଧ୍ୱନି ଗିରି-କନ୍ଦର ପାଉଛି
ପିକ କୁହୁତାନେ ଅଳିର ଗୁଞ୍ଜନେ କାନନ କି ବାଇ । ୨ ।

ଝର ଝର ଶବଦେ ଝରଣା ପ୍ରପାତ, ଉଷର ଉଙ୍କର ସବେ ଉତପାତ
ସହରେ ସହରୁଁ ଗ୍ରାମେ-ଗ୍ରାମୁଁ ଜୟ ପଲ୍ଲୀକୁ ଯାଇ । ୩ ।

ନରମ ଗରମ କି ଅବା ସ୍ୱାଧୀନ ସ୍ୱଦେଶୀ ବିଦେଶୀ ଅବା ପରାଧୀନ
ବଙ୍ଗାଳି, ଓଡ଼ିଆ, ପଞ୍ଜାବୀ, ତେଲିଙ୍ଗୀ, ଗୁଜରାଟୀ ଭାଇ । ୪ ।

ସକଳେ ଗାଆନ୍ତି ଜନନୀର ଜୟ ସକଳେ ଭଜନ୍ତି ମହାତ୍ମାର ଜୟ
କାରାଗାରେ ବନ୍ଦୀ ଜପିଚଲଣି ଏବେ ଗାନ୍ଧୀ ଗୋସାଇଁ । ୫ ।

ଯାଅ ଭାଇ ଏବେ ନିଜ ଘରକୁ ନିଜ ଘର କଥା ନିଅ ମନକୁ
ବିଦେଶୀ ବର୍ଜନ ସ୍ୱଦେଶରେ ମଜ୍ଜି ଦିଅ ପ୍ରାଣ ଲଗାଇ । ୬ ।

( ସ ମା ପ୍ତ )

# ଉତ୍କଳ ବୀଣା

ବାଜି ଉଠୁ ମୋ ବୀଣା ଉତ୍କଳର ଘରେ ଘରେ
ବାଜି ଉଠୁ ମୋ ଗାନ ଉତ୍କଳୀ ଅନ୍ତର ସ୍ତରେ,
ବାଜି ଉଠୁ ଦେଶପ୍ରୀତି—ସୁନ୍ଦର-ମଧୁରିଁ-ତାନ
ଝଙ୍କାରି ଉଠୁ ମୋ ବୀଣା ଗାଇ ସେ ମଧୁର ଗାନ ।

---

## ପରଲୋକଗତା ଜନନୀ

ଶ୍ରୀ ଚରଣେକମଳେଷୁ ··

---

'ଉତ୍କଳ ବୀଣା' ବିଭିନ୍ନ ରାଗ ରାଗିଣୀର ଜାତୀୟ ସଙ୍ଗୀତରେ ପୂର୍ଣ୍ଣ । ପ୍ରଥମ ଝଙ୍କାର ପରେ ଏହି ଝଙ୍କାରର ସୁର ତାଳ ନିର୍ଦ୍ଦେଶରେ, କଟକ ଆର୍ଟ ଥିଏଟରର ସଙ୍ଗୀତାଚାର୍ଯ୍ୟ ଭଦ୍ରଖ ନିବାସୀ ମୋର ସ୍ନେହର ଭାଇ ଶ୍ରୀମାନ୍ ଗୌରାଙ୍ଗଚନ୍ଦ୍ର ଦାସ ମୋତେ ସାହାଯ୍ୟ କରିଥିବାରୁ ମୁଁ ତାହାଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଅଛି ।

'ଉତ୍କଳ ବୀଣା' ଉତ୍କଳ ଦେଶସାରା ପ୍ରଚାରିତ ହୋଇପାରିଲେ ମୋର ପରିଶ୍ରମ ସଫଳ ହେବ । ଇତି ।

କଟକ
ତା ୧୦-୭-୧୯୩୧

ପ୍ରଣେତା

( ୧ )

## ଉତ୍କଳ ବନ୍ଦନା

ରାଗ—ଝିଁମ୍ଭାଟ, ତାଳ—ଏକତାଳି

ଉତ୍କଳ ମମ କରମ ଦାୟିନୀ ଉତ୍କଳ ମମ ଜନନୀ
ଶୁଭଦେ ବରଦେ ସୁଖ ବିଧାୟିନୀ ଧନ୍ୟେ ପୁଣ୍ୟେ ନମାମି । ଧ୍ରୁବ ।

ଗଢ଼ିଛୁ ମୋ ଦେହ ଉତ୍କଳ ମା'ଟି
ଅନ୍ତିମ ଶେଷ ହେବ ସେ ମାଟି
ଉତ୍କଳ ମମ କରମ-କ୍ଷେତ୍ର ଭକ୍ତି ମୁକ୍ତିଦାୟିନୀ । ୧ ।

କେତେ କେତେ ବୀର ଜନମିଲେ କୋଳେ
ଭାରତ ଅତୁଳ ଗୀରତ ହେଲେ
ଦେଶ-ଗୀରତ-ଧରମ-ପ୍ରେମ-ମନ୍ତ୍ର-ପୂତ-ଅବନୀ । ୨ ।

( ୨ )

(ବାଲେଶ୍ୱର ଜିଲ୍ଲା ସମ୍ମିଳନୀର ୨ୟ ଅଧିବେଶନ ବସ୍ତ୍ରାଠାରେ ଗୀତ)।

ରାଗ—ବସନ୍ତ, ତାଳ—ଏକତାଳି

(ଆମି ପ୍ରନମି ତୋମାରେ ଚଲିବ ନାଥ ସଂସାର କାଯେ—ବୃତ୍ତେ)

ତୋର ଚରଣେ କୋଟିଏ ଜୁହାର ନେ ମା ଭାରତ ଜନନୀ
ଆମ୍ଭ ଜୁହାର ଘେନିଲେ ମାଗୋ ତୋତେ ଭେଟିବୁଁ ସହଣି । ଘୋଷା

ଯେ ଗୀତ କଳଙ୍କ ଗରଭଧାରୀ ବଢ଼ାଇଥିଲି ଯତନ କରି
ସାଦରେ ପକାଇ ଦେଇଛୁଁ ମାଗୋ ତୋ ପୂଜା ମାନସେ ।
ଗମ୍ଭୀରାସୁର ଯଜ୍ଞାହୁତ ବକ୍ଷକୁଣ୍ଡେ ହୋଇ ମିନତ
ପଞ୍ଜାବବାସୀ ପ୍ରେତ-ଶାନ୍ତ ହୋମ କରଣି । ୧ ।

ଶତ ପଞ୍ଜାବର ଅତ୍ୟାଗ୍ରିର ଭାରତେ ହୋଇ ବାରମ୍ବାର
ଦୁଃଖିନୀ ଜନନୀ କ୍ରନ୍ଦନ ଧ୍ୱନି ଶୁଣୁ ଏ ସଂସାର ।
ପଶୁ-ଶକତ ଦାନବ ଜାତ ଖାଇ ଅମ୍ଭ ଦେହ ଲଭନ୍ତୁ ଶାନ୍ତ
ପିଇଣ ରୁଧିର ଦମନ ଜାତ ନୃମୁଣ୍ଡ-ମାଳିନୀ । ୧ ।

ଅମ୍ଭ ରକତ କ କରିବ ମିଠା ଅମ୍ଭର ମାଂସ ସ୍ୱାଦୁହୀନ ସିଠା
ଯାତନା ବିଷରେ ବୋଳା ହୋଇଅଛୁ ଅମ୍ଭର ଲହୁ
ଦୁଃଖୀର ହରଷା ଖର ନିଶ୍ୱାସ ଅମୃତ ଜୀବନ କରନ୍ତୁ ବିଷ
ଖାଇ ସେହି ବିଷ ଚଣ୍ଡୀ-ଚାମୁଣ୍ଡୀ ହେବେ ପାଗଳିନୀ । ୩ ।

ପୂରାଇବା ପାଇଁ ତୋ ଶୁଭ କାମନା
ଜୀବନ ଦେବାକୁ ନୋହୁଁ ଗୋ ବମନା ।
କରନ୍ତୁ ଗୋ ପଣ-ନାଶିବୁ ଅସାଡ ହିଂସା ବରଜ
ବନାରେ ପଶୁଣୀ ଦଂଶି ଯେ ଶୃଗାଳ
ମରବା ଅଗରୁ ହୁଏ ସେ ପାଗଳ
ପାଗଳାମି ତାର ମରଣ ଲକ୍ଷଣ ଜଗତେ ଜାଣି । ୪ ।

## ( ୨ )

(ବାଲେଶ୍ୱର ଜିଲା ସମ୍ମିଳନୀର ୨ୟ ଅଧିବେଶନ ସଭାଠାରେ ଗୀତ)।

ରାଗ—ବିଭାସ, ତାଳ—ଏକତାଳି

(ଆମି ପ୍ରଣମି ତୋମାରେ ଚଲିବ ନାଥ ସଂସାର କାଯେ—ସୁରେ)

ତୋର ଚରଣେ କୋଟିଏ ଜୁହାର ନେ ମା ଭାରତ ଜନନୀ
ଆମ୍ଭ ଜୁହାର ନେଲେ ମାଗୋ ତୋତେ ଭେଟିବୁଁ ସହଣି । ଘୋଷା

ଯେ ଘୃତ କଳଙ୍କ ଗରଭଧାରି ବଢ଼ାଇଥିଲୁ ଯତନ କରି
ସାଦରେ ପକାଇ ଦେଇଛୁଁ ମାଗୋ ତୋ ପୂଜା ମାନସେ ।
ଗଯ୍ୟାସୁର ଯଜ୍ଞାହୂତ ବକ୍ଷକୁଣ୍ଡେ ହେଉ ମିନତି
ପଞ୍ଜାବବାସୀ ପ୍ରେତ-ଶାନ୍ତ ହୋମ ବରଣି । ୧ ।

ଶତ ପଞ୍ଜାବର ଅତ୍ୟାଚାର ଭାରତେ ହେଉ ବାରମ୍ବାର
ଦୁଃଖିନୀ ଜନନୀ କ୍ରନ୍ଦନ ଧ୍ୱନି ଶୁଣୁ ଏ ସଂସାର ।
ପଶୁ-ଶକତି ଦାନବ ଜାତି ଖାଇ ଆମ୍ଭ ଦେହ ଲଭନ୍ତୁ ଶାନ୍ତି
ପିଇଣ ରୁଧିର ଦମନ ଜାତ ନୃମୁଣ୍ଡ-ମାଳିନୀ । ୧ ।

ଅମ୍ଭ ରକତ କି କରିବ ମିଠା ଅମ୍ଭର ମାଂସ ସ୍ୱାଦୁହୀନ ସିଠା
ଯାତନା ବିଷରେ ତୋଳା ହୋଇଅଛୁ ଅମ୍ଭର ଲହୁ
ଦୁଃଖୀର ନିରାଶା ଖର ନିଶ୍ୱାସ ଅମୃତ ଜୀବନ କରନ୍ତୁ ବିଷ
ଖାଇ ସେହି ବିଷ ଚଣ୍ଡୀ-ରୁମଣ୍ଡୀ ହେବେ ପାଗଳିନୀ । ୩ ।

ପୂରାଇବା ପାଇଁ ତୋ ଶୁଭ କାମନା
ଜୀବନ ଦେବାକୁ ନୋହୁଁ ଗୋ ବିମନା ।
କରିଛୁଁ ଗୋ ପଣ-ନାଶିବୁ ଅସ୍ୱତ ହିଂସା ବିରଜ
ବିନାଶେ ପରାଣୀ ଦଂଶି ଯେ ଶୃଗାଳ
ମରିବା ଆଗରୁ ହୁଏ ସେ ପାଗଳ
ପାଗଳାମି ତାର ମରଣ ଲକ୍ଷଣ ଜଗତେ ଜାଣି । ୪ ।

( ୩ )

ଉତ୍କଳ ପ୍ରାଦେଶିକ ସମ୍ମିଳନୀର ୧ମ ଅଧିବେଶନ, ବାଙ୍କ ଠାରେ ଗୀତ

ରାଗ—ଭୈରବୀ; ତାଳ—ଖେମଟା

( ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ରରାୟଙ୍କ ଅଭ୍ୟର୍ଥନା ଉପଲକ୍ଷେ )

ଦେଖ ଆସିଛନ୍ତି ଆମ୍ଭ ଦେଶକୁ
ବିଜ୍ଞାନ ବୀର ଜ୍ଞାନ-ସାଗର ତ୍ୟାଗୀପ୍ରବର
ଯୁକ୍ତିବୁଝ ଆମ୍ଭ କରମକୁ
ସରଳତାର ସେ ଅବତାର ଧୀର ସୁନ୍ଦର । ଘୋଷା ।

ନୋହିଲେ କି ସହଜେ ଯାଇ ଏତେ ଦୂରୁ ଆସନ୍ତେ ଗାଇ
ଦରିଦ୍ର ଏ ଦେଶ ଆମ୍ଭର
କି ଉପହାର ଅଛି ଦେବାର ଯୋଗ୍ୟ ତାଙ୍କର । ୧ ।

ଜୀବନେ ଯା ଥିଲେ ଅରଜି ଦେଶ ଲାଗି ଦେଲେ ବରଜି
ପରହିତେ ରହିଲେ ମଜ୍ଜି
କର ପ୍ରଚାର ଚରଖା ତାର ମୂଳ ମନ୍ତ୍ରର । ୨ ।

ଭାବି କେ ପାରିବ ସ୍ୱପନେ ସେତେ ତ୍ୟାଗ କଲେ ଜୀବନେ
ଶୁଖାଇ ଦେଲଣି ରକତ
ଦୁଃଖ ଦେଶର ଚିନ୍ତା ଗହ୍ୱର କ୍ଷୀଣ ଶରୀର । ୩ ।

ନ ଥିଲା ବିଶ୍ୱାସ ଯାଙ୍କର ଚରଖାରେ ଦେଶ ଉଦ୍ଧାର
କେ ଜାଣେ କେ ଭୁଲାଇ ଦେଲା
ମନ ତାଙ୍କର କଟିଲନି ସାର ଗାନ୍ଧି ମନ୍ତ୍ରର । ୪ ।

ଦେବ କେ ଦଅ ଉପହାର ଆଣିଛ ଯେ ଯାହା ସମ୍ଭାର
ସ୍ନେହ ପୀରତ ଭକତର
ପୂଜା ବେଭାର କରି ଆଦର ଅର୍ଘ୍ୟ-ବରା ୫ ।

( ୪ )

## ପଞ୍ଚୁଆର ସଙ୍ଗୀତ

କଟକରେ ଗୋପବନ୍ଧୁ ଦିବସରେ

—୧୯୨୮—

ତାଳ—ଏକତାଲ

ହୃଦୟ ବେଦନା ଭରି କେ ଆଜି ପାରିବ କହି
ଜଳୁଛି ଅନ୍ତରେ ଚିତା ଲଭୁଛି କେବଳ ଦହି । ଧ୍ରୁ ।

ଉତ୍କଳ ଗଗନ ଶଶୀ
ନିମିଷେ ଗଲରେ ଖସି
ଏତ ଅମାନିଶି ମିଶି ଅନ୍ଧାରେ ଅବଶ ମହୀ । ୧ ।

ଉତ୍କଳ ହୃଦୟ ଧନ
କେ କଲା କାହିଁ ଗୋପନ
ଝୁରୁଛି ଜନନୀ, ତାର ମାର ଧାର ଯାଏ ବହି । ୨ ।

କାହିଁ ଗଲ ଗୋପବନ୍ଧୁ
ଅନାଥ ଦରିଦ୍ର ବନ୍ଧୁ
କୋମଳ ପରାଣ ଦୁଃଖୀ ଦୁଃଖ ନ ପାରଇ ସହି । ୩ ।

ଶୁଣିଲେ ପରର ଦୁଃଖ
ପାଶୋରି ଆପଣା ସୁଖ
ବେଗେ ତାର ଦ୍ୱାରେ ଠିଆ ହେଉଥିଲ ଦୟାବହି । ୪ ।

ଦେଶ ଜାତିର ଉନ୍ନତି
ଧରମେ କରମେ ମତି
ଜୀବନ ସାରିଲ ଶେଷେ ତ୍ୟାଗ ତପ ବ୍ରତେ ରହି । ୫ ।

ସରଳ ମଧୁର ଭାଷା
ସରଳ-ସୁନ୍ଦର ଭୂଷା
ମିତାହାର ମିତାଚାର ମିତଭାଷୀ ମିତବ୍ୟୟୀ । ୬ ।

ହୃଦୟ ପରାଣ ମନ
ହୋଇ ଅତି ଉଚ୍ଛନ୍ନ
ତୁମ୍ଭର ସ୍ଥାନ ପୂରଣ ହେବ କି କହି ନୁହଇ । ୭ ।
ଆସ ଉତ୍କଳ ଯୁବକ
କରପଣ ହୁଅ ଏକ

( ୫ )

ଜାଗ ଭାଇ ଜାଗ ଜାଗ ଜାଗରେ;
"ମନ୍ତ୍ରର ସାଧନ ଶରୀର ପତନ" ଜପି
କରମରେ ଲଗ ଲଗ ଲଗରେ । ଧ୍ରୁ ।

ତନୁ ମନ ପ୍ରାଣ ଧନ ଲଗାଇ ଦେଇ
ଜନ୍ମଭୂମି ପ୍ରୀତି ଦମ୍ଭ ଗରବେ ଗାଇ
ବିଶ୍ୱଭୁବନ ଚମକାଇ
ଦଅ ଭାଇ, ଡେଇ ନାହିଁ,
ବୀର ଦର୍ପେ ମଦେ ମାତି ଉଠ ଗଦଗଦେ
ଶାନ୍ତ ହମରେ ମିଶି ଯାଇ, ଡେରି ନାହିଁ ।

ଭାରତ ଶୂରବର ପ୍ରତାପ ପୃଥ୍ୱୀଶ୍ୱର
କୃଷ୍ଣ ରାମ ନାମ ଧାର୍ଯ୍ୟ, ଡେରି ନାହିଁ ।

(ଗାଅ) ଉତ୍କଳ—ଭାରତ—ଶୌର୍ଯ୍ୟ—ବୀର୍ଯ୍ୟ
-ସ୍ତୁତି-ସୁନ୍ଦର-ସଙ୍ଗୀତ ରାଗରେ ।

( ୭ )

## ଶୋକ ସଙ୍ଗୀତ

( ୰ ପଣ୍ଡିତ ମୋତିଲାଲ ନେହେରୁଙ୍କ ବିୟୋଗରେ ବିରଚିତ )

ରାଗ—ଆଶାବରୀ; ତାଳ- ତେତ୍ତ୍ୱାଲ

(ଅଙ୍କ) ହୃଦୟର କଥା ହୃଦୟର ବ୍ୟଥା କେ ପାରିବ କହି କେ ପାରିବ।
ମରମେ ମରମେ ଜଳୁଛୁ ଅନ୍ତର ସେ ନିଦ କ ଯାତନା କେ ଜାଣିବ। ଧ୍ରୁ

ହା ବିଧି ହା ବିଧି କି କଲୁ କି କଲୁ
ଶିରୁ ଶୋକସ୍ରୋତେ ଦିନ। ଭସାଇଲୁ
ନିରାଧାର କାଲ ଭଇଁରୀର ଖେଳ ବୁଝାଇ ବୁଝାଇ କି ମାରିବ। ୧।

ଭାରତର ସୁତ ସୁଧୀ ତ୍ୟାଗବୀର
ତ୍ୟାଗୀ ବୈରାଗୀ ଯୋଗୀ ସଂଯମୀ ସୁଧୀର
ତା ଗଗନ ମଣି 'ମୋତିଲାଲ' ଖସିଗଲ କି ଅନ୍ଧାର !! କେ ହରିବ ?

ଅହିଂସାର ରଣଜୟୀ ଯୋଦ୍ଧା ବୀର
ସେନାପତି ଅବା ସତେ ସୁନାଶୀର
ବନ୍ଦେମାତରଣେ ତା ପରି କେ ଜଣେ ? ଘୋର ମୃତ୍ୟୁରଣେ କି ହାରିବ ?

ଭାରତର ମୁକ୍ତ ଅମୃତ କାହାଣୀ
ଆଜୀବନ ଯାର ଧର୍ମ କର୍ମ ବାଣୀ
ଦେଶ ସେବା ଶେଷ-ସ୍ୱପନେ ସ୍ୱପନେ ତା ସ୍ୱରଗ ଗତି କେ ଜାଣିବ ?

( ୭ )

## ଶ୍ରୀଜଙ୍ଗ ସଂଗୀତ

ରାଗ—ବେହାଗ, ତାଳ—ଅଡ଼ାଠେକା

କଏ ନ ଶୁଣିଛୁ ସେ ଦାରୁଣ କଥା କଏ ନ ଜାଣିଛୁ ଗୋ
ଯିଏ ବା ଦେଖିଛୁ ସେ ନାରକୀ ଲୀଳା ତା ହୃଦେ କ ବ୍ୟଥା
ହାଣିଛୁ ଗୋ

ଦୁଃଖିନୀ ଉତ୍କଳେ ଶ୍ରୀଜଙ୍ଗ କାହାଣୀ
ପ୍ରତିପ୍ରାଣେ ଦେଳ କ ସନ୍ତାପ ଆଣି
ପ୍ରତି ନୟନକୂପ ଶିହର ଉଠିଳ ଜାଣେ ଯେ ମନକୁ
ଆଣିଛୁ ଗୋ । ୧ ।

ନିର୍ବୋଧ ମୂରୁଖ ଗ୍ରାମବାସୀ ନରେ
ପଳାଇ ଲୁଚିଲେ ଅତ୍ୟାଚ୍ଚର ଡରେ
ବାଳକ ବାଳିକା ଅନାଥିନୀ ନାରୀ କେତେ ସଂଖ୍ୟା କଏ
ଗଣିଛୁ ଗୋ । ୨ ।

କାଢ଼ି ନେଲେ ଘରୁ ସିନ୍ଦୁକ କବାଟ
ତଡ଼ି ଦେଲେ ଖଣ୍ଡ ମାରି ବେତ ଘୁଷ
ବୋହି ନେଲେ ଖାଲି କରି ଅମାରକୁ (ସତେ) ବାପ ଅଜା
ପରି କଣିଛୁ ଗୋ । ୩ ।

ଗୃଲିଲେ ଦେଯେକୁ ପାଦ ପୋଛି କରି
ଜାଳିଲେ ଚରଣ କାଠ ଆଲମାରି
ନାଭ ଛେଲିକଠା ଭୋଜନ ପରିବା ଏକଥା ମୁଁ ସତ ମଣିଛୁ ଗୋ ।୪।

ଶ୍ମଶାନରୁ ବଳି ହୋଇଲା ଶ୍ମଶାନ
ଠାଉର ଠାଉରେ ଉଠେ ସକଳ କ୍ରନ୍ଦନ
କା ଘ୍ଲିଥ ସହିବ ଟିକେ ଧୃତ ଧରିବ ଯେ ଥରେ ସେ ବାଟେ
ଯାଉଛୁ ଗୋ । ୫ ।

ବାହୁଡ଼ିଲେ ଯହୁଁ ଜେଲୁ ଘରେ ଆସି
କର ନେବେ ବୋଲି ଆସିଗଲେ ଚଷି
କାଳଦଣ୍ଡ ସମ ଦୂତଗଣ ଯମ ପେଷିଲ କି କବ ଭଣିଛୁ ଗୋ । ୬ ।

ଜ୍ୱର-ପୀଡ଼ା ଠାରୁ ଆନ ପୀଡ଼ା ନାହିଁ
ଅଦାୟ ହୋଇଲା ଭୁଖାଇ ଭୁଖାଇ
ଚେହଲକଥା ଠାରୁ କଥା ଏ କଲିକା ବଡ଼ିଲ, ଲୁଣ ମା
ଶାଣିଛୁ ଗୋ । ୭ ।

ଗାନ୍ଧୀ କଲେ ସନ୍ଧି ମୁକୁଳିଲେ ବନ୍ଦୀ
ଶିଜଙ୍କ ବେଲକୁ ହେଲା ଏକ ଫନ୍ଦ
'ଅହିଂସା ନୁହଇ ହିଂସା ଅପରାଧୀ' କରମ ଫଳକୁ
କଣିଛୁ ଗୋ । ୮ ।

( ୮ )

## ପତାକା ସଂଗୀତ

ଗଜଲ—ଗୁଜରାଟି କାଓ୍ୱାଲବା (କେ ବଦେଶୀ ମନ୍
ଉଦାସୀ—ବୃତ୍ତେ)

ରେ ପତାକା ଜାତିର ଗରବ ଜାତିର ଜୀବନ ପରାଣ ତୁହିରେ
ଏକତା-ପୀରତି-ଶାନ୍ତି-ମୂରତି ସୁନ୍ଦର ତୋହର ସମାନ
ନାହିଁରେ । ଧ୍ରୁବ ।

ତୋହର ଲଗି କେତେ ଯେ ସମର
ଲଗିଛୁ ଜାଗିଛୁ କୀରତି ଅମର
ତୋହର ଲଗି କେତେ କାରାଗାର ବରିଲେ ମରିଲେ
ସମର-ଭୂଇଁରେ । ୧ ।

ତୋହର ଲଗି ଦେଶେ ଦେଶେ
ପୀରତି ହୋଇଛୁ ବଇରି ଶେଷେ
ତୋହର ଲଗି ଅରିର ଖଡ଼ଗ ଶରୀର ରକତେ ଦେଲେ
ରଞ୍ଜାଇରେ । ୨ ।

ଜାଣିଛୁ ଯେ ଥରେ ଜାତୀୟତା ସ୍ୱାଦୁ
ଚୁଷିଛୁ ଯେ ଥରେ ସ୍ୱାଧୀନତା ମଧୁ
ପାରିଛୁ ଦେବାକୁ ଜୀବନ ଯୌବନ ମାନ ସନମାନ
ବମନ ନୋହିରେ । ୩ ।

ଉଡ଼ୁଛୁ, ଉଡ଼ୁଛୁ, ଉଡ଼ୁଥିବୁ ପରା
ଯାବତ ଏ ଦେଶ ଧରିଥିବ ଧରା
ଯାବତ ଜାତିର ଜଣିଏ ପରାଣେ ଥିବ ତୁ ରାଜବୁ
ଗଗନ ଛୁଇଁରେ । ୪ ।

ଧନ୍ୟ ଧନ୍ୟ ତୁହି ତନ ରଙ୍ଗିଆରେ
ଧରିଛୁ ଅଙ୍ଗରେ ସୁଖ ସାଙ୍ଗିଆରେ
ଚରଖା ଦରିଦ୍ର-ସେବା-ଅବତାର ବକ୍ଷରେ ସେ ଚିହ୍ନ
ନମୁଛୁ ମୁହିଁରେ । ୫ ।

( ୯ )

## ପଣ୍ଟୁଆର ସଙ୍ଗୀତ

ଗଜଲ—ତ୍ରିଜଗଦ୍ଗତି କାହାରବା

ଗାଅ ହେ ବିଜୟ ଗୀତ ଏକତା ପ୍ରୀତି ଶାନ୍ତି ସୁମନେ
ଉଠୁ ସେ ଅମର ଗାନ ମଧୁର ତାନ ବିଶ୍ୱ ଭୁବନେ ।

ଶୁଣୁ ସେ ସାରା ଜଗତେ ଅବା ମରତେ ସ୍ୱରଗ ଧାମେ
ବାଜୁ ସେ ସ୍ୱାଧୀନ ବାଣୀ ଜଗତଜଣା ସବୁରି କାନେ । ୧ ।

ରହିଁଛୁ ଦୂର ଦେଶରେ ସାଗର ପାରେ ପଶୁ ଶକତି
ଧାଇଁଛୁ ଦମନ ମାତି ଜଗାଇ ଭୀତି ଭ୍ରମ ଲପନେ । ୨ ।

ଭାରତ ଜୈତ୍ର ବାଣୀ ପ୍ରେମ କାହାଣୀ ଦଗଦିଗନ୍ତେ
ଚହଲ ଚମକ ଆଣେ ଜଗତ ପ୍ରାଣେ ଜଡ଼ ଜୀବନେ । ୩ ।

ଅହିଂସା ଯନ୍ତ୍ରେ ଅଜ ଉଠୁଛି ବାଜ ନବ୍ୟତ ଗୀତ-
ମୋହନ ମନ୍ତ୍ରେ ପରି ପିୟୂଷ ଝରି ବହେ ସଘନେ । ୪ ।

ହସୁଛି ଦୂର ଗଗନେ ତାରକା ସନେ ରକା ଚନ୍ଦ୍ରମା
ମଳିମା ଅନଳ ଶୋଭି ସ୍ୱାଧୀନ ଆଭା ବର୍ଷେ ବହନେ । ୫ ।

ଭସୁଛୁ ପ୍ରେମ ତରଙ୍ଗେ ଲହରୀ ଭଙ୍ଗେ ବଙ୍ଗ ସାଗର
ନାଶୁଛୁ ଗରବ ଦମ୍ଭ ଗୃହୁସ୍ଥ ଖମ୍ଭ ବଦେଶୀ ପ୍ରାଣେ । ୬ ।

ବିଶାଳ ହୃମ ଅଚଳ ଅତି ଚଞ୍ଚଳ ସ୍ୱାଧୀନ ଗାନେ
ସତତ ମନୁର ଗତି ସ୍ୱାଧୀନ ପ୍ରୀତି ଜାଗିଛୁ ପ୍ରାଣେ । ୭ ।

ଶୃଙ୍ଗେ ବସି ମନ୍ଦନେ ଗନ୍ଧନ ବନେ କଲା ଚୋକଳ
ଝରଣା ବାରିର ଧାରା ଶୁଣିଲ ପରା ଚମକେ ଭାନେ ।୮।

ଉତ୍କଳୀ ଯୁବା ଯୁବତୀ ସାଧ୍ୱୀ ସତୀ ବାଳା ବିଧବା
ବାଳକ କବା କିଶୋର ଅବା ସ୍ଥବିର ଜଗ ଚେତନେ ।୯।

ଜାଗ ହେ ଜାଗ ସରବେ ଜଗ ଗରବେ ଗୌରବ ମଦେ
ମାଗ ହେ ଶ୍ରୀଚରଣେ ପ୍ରେମ ନିଦାନେ ମୁକତି ଧନେ ।୧୦।

( ୯ )

## ପଞ୍ଚୁଆର ସଙ୍ଗୀତ

ଗଜଲ୍—ଚୂଡ଼ଜଗଡ଼ି କାହାରବା

ଗାଅ ହେ ବିଜୟ ଗୀତ ଏକତା ପ୍ରୀତ ଶାନ୍ତ ସୁମନେ
ଉଠୁ ସେ ଅମର ଗାନ ମଧୁର ତାନ ବିଶ୍ୱ ଭୁବନେ ।

ଶିକୁ ସେ ସାରା ଜଗତେ ଅବା ମରତେ ସ୍ୱରଗ ଧାମେ
ବାଜୁ ସେ ସ୍ୱାଧୀନ ବୀଣା ଜଗତଜଣା ସବୁରି କାନେ । ୧ ।

ରହିଁଛୁ ଦୂର ଦେଶରେ ସାଗର ପାରେ ପଶୁ ଶକତି
ଧାଇଁଛୁ ଦମନ ମାତି ଜଗାଇ ଭୀତି ଭ୍ରମ ଲପନେ । ୨ ।

ଭାରତ ବିଜୟ ବାଣୀ ପ୍ରେମ କାହାଣୀ ଦଗଦଗନ୍ତେ
ଚହଲ ଚମକ ଆଣେ ଜଗତ ପ୍ରାଣେ ଜଡ଼ ଜୀବନେ । ୩ ।

ଅହିଂସା ଯନ୍ତ୍ରେ ଆଜ ଉଠୁଛୁ ବାଜ ନଗ୍ନ ଗୀତ-
ମୋହନ ମନ୍ତ୍ରେ ପରା ପିୟୂଷ ଝରା ବହେ ସପନେ । ୪ ।

ହସୁଛୁ ଦୂର ଗଗନେ ତାରକା ସନେ ରକା ଚନ୍ଦ୍ରମା
ମାଳମା ଅନଳ ଶୋଭା ସ୍ୱାଧୀନ ଆଭା ବିଷେ ବଦନେ । ୫ ।

ଭସୁଛୁ ପ୍ରେମ ତରଙ୍ଗେ ଲହରୀ ଭଙ୍ଗେ ବଙ୍ଗ ସାଗର
ନାଶୁଛୁ ଗରବ ଦମ୍ଭ ଗୃହସ୍ତ ଖମ୍ବ ବିଦେଶୀ ପ୍ରାଣେ । ୬ ।

ବିଶାଳ ହିମ ଅଚଳ ଅତି ଚଞ୍ଚଳ ସ୍ୱାଧୀନ ଗାନେ
ସରିତ ମନ୍ଥର ଗତି ସ୍ୱାଧୀନ ପ୍ରୀତି ଜାଗିଛୁ ପ୍ରାଣେ । ୭ ।

କୁଞ୍ଜୁକୁଞ୍ଜ ବସି ମନ୍ଦନେ ଗଦ୍ଗଦ ବଚନେ କଳା କୋକିଳ
ଝରଣା ବାରିର ଧାରା ଶୁଣିଲ ପରା ଚମକେ ତାନେ । ୮ ।

ଉତ୍କଳୀ ଯୁବା ଯୁବତୀ ସାଧ୍ୱୀ ସତୀ ବାଳା ବିଧବା
ବାଳକ କିବା କିଶୋର ଅବା ସ୍ଥବିର ଜଗ ଯତନେ । ୯ ।

ଜାଗ ହେ ଜାଗ ସରବେ ଜଗ ଗରବେ ଗୌରବ ମଦେ
ମାଗ ହେ ଶ୍ରୀଚରଣେ ପ୍ରେମ ନିଦାନେ ମୁକତି ଧନେ । ୧୦ ।

## ( ୧୦ )

ରାଗ - ବେହାଗ; ତାଳ ତେଓରା .

ସଂସାର ସାରର ଜନ୍ମ ଅଧିକାର ସବୁରି ସମ୍ପତ୍ତି ସ୍ୱାଧୀନତା ଭାଇ
ଚିର ପରାଧୀନ ନୁହଇ କେହି ତ କାହା ଭାଗ୍ୟେ ଧାତା ଏହା ଲେଖିନାହିଁ

ହେବାକୁ ସ୍ୱାଧୀନ ପଶୁପକ୍ଷୀ ନରେ
ସବୁରି ପରାଣେ ଆଶା ତ ସଞ୍ଚରେ
ପିଞ୍ଜରାରେ ଶୁଆ ଅବା ସିଂହଛୁଆ କି ବେଦନା ଭୋଗେ ସେ ଯିନା ଜାଣଇ

ମାନବ ତ ସବୁ ପ୍ରାଣୀର ସାର
ସ୍ୱାଧୀନତା ଦାବୀ ଅଧିକ ତାହାର
ମାନବ ଜଗତେ ଯେ ଜାତି ଆଟକେ ସେ କି ରହିଥିବ ପରକୁ ଅନାଇ

ପରାଧୀନ ବୋଲି ଭାରତ ସନ୍ତାନ
ହୋଇଥିବୁ କି ହେ ଚିର ଉଦାସୀନ
ଆମ୍ଭେ ପରା ଅଛୁ ତେତିଶକୋଟି ହେ ତେବେ କିପାଁ ଚିନ୍ତା ଭାବନା
ତାପାଇଁ ।

ଦିନେକ ଏକାଠି ଲାଗିଲେ ସରବେ
ଅହିଂସା ମନ୍ତ୍ର ଜପିଲେ ନୀରବେ
ସ୍ୱାଧୀନତା ଦେବୀ ଉଭା ହେବେ ଆସି ଦେଇ ଶୁଭାଶିଷ ସଫଳତାପାଇଁ

( ୧୧ )

କି ଗୀତ ଆଜ ମୁଁ ଗାଇବ ହେ ଭାଇ, ଗାଇବାକୁ ମନ ନାହିଁ
ଭାଙ୍ଗିଗଲାଣି ମୋ' ହୃଦୟର ବୀଣା ତାର ଛିଡ଼ି ଛିଡ଼ି ଯାଇ । ଧ୍ରୁବ ।

ସୁର ତାଳ ଲୟ ତାନେଁ ମିଶିଲେ ଗୀତ ସିନା ସୁମଧୁର
                    ହେବ ସୁରସ ଶ୍ରୁତି ମଧୁର
ଗୋଟିକ ବନ୍ଧନେ ହେବ କି ଆଦର, କାନକୁ ରୁଚିବ ନାହିଁ ।

ଦିନୁ ଦିନୁ ନାନା ଦୁଃଖ ପରା ଆସି ଦେଶକୁ ଦିଏ ଗିରାସି
ଅନାହାର ରୋଗ ଶୋକ କ୍ରୁର ରାହୁ ଉତ୍କଳର ସୁଖ ଶଶି ।

କଲା ଦେଶ ଛାର ଖାର; ନାନା ଅସଙ୍ଗତ ପାପ ବେଭାର;
                    ଆଜ ନାହିଁ ସେ ଶାନ୍ତି ଆଗାର
ଝରୁଛି ଜନନୀ ନୟନୁ ଲୋତକ, ଧାରର ବିରାମ ନାହିଁ ।

ମନ-ଫୁଲାଣିଆ ଗାଏ ସିନା ଗୀତ ଯାର ମନ ହସୁଥାଇ
ଯା'ର ଚିରଦୁଃଖ ଶୋଷିଛି ସାରକୁ ତାର ସେ ସରାଗ କାହିଁ ।

ହେଲେ କୋଟି କୋଟି ସନ୍ତାନ ଏକ ଧୁନ୍ ଯାଆନ୍ତା ଦେଶର ଦୁଃଖ,
                    ଏଥି ରହନ୍ତା କାତର ଠେକ,
ଏକ ତାଳେ ମିଳି ବଜାଇଲେ ବୀଣା ଚମକି ଉଠନ୍ତା ମହୀ ।

( ୧୨ )

## ପଟୁଆର ସଂଗୀତ

ଗଜଲ୍, ତାଳ—ତେଓଟ

(ଶ୍ରୀରାମଚନ୍ଦ୍ର କୃପାଳୁ ଭଜନ ହରଣ ଭବଭୟ ଦାରୁଣଂ—ବୃତ୍ତେ)

ଆସ, ଆସହେ ଆସହେ ଉତ୍କଳ ସନ୍ତାନ ଏକମନେ ଆଜ ଏକ ପ୍ରାଣେ
ପୂଜିବା ହେ ମିଳି ଜନନୀ ଚରଣେ ଗାଇ ଜୟ ଗୀତ
ଏକ ତାନେ । ୧ ।

ଆସ ହେ ସୁମନେ ଉଚ୍ଚ ବସନେ ବନ୍ଧୁ ନାମ ଚୁଣି ମନେ ମନେ
ଭାରତ-ଶରୀର ଜନମ ମୁକୁତ ଲଗି ଅଳି କର ଶ୍ରୀଚରଣେ । ୨ ।

(ଆଜ) ମୋତିଲାଲ ବୀର ଗଭୀରବ ଗୀର ଗାଇବା ହେ
ଆସ ଗାନେ ଗାନେ
ଗରବେ ତା ଗୁଣ ତ୍ୟାଗର ଗାରିମା ମୁଦ୍ରିତ କରାଇବା
ପ୍ରାଣେ ପ୍ରାଣେ । ୩ ।

ସେ ଥିଲ ଏ ଦେଶ ଦଧୀଚ ସୋଦର ଉପକାରୀ ସାରା ଜୀବନେ
ସେ ଥିଲ ତ୍ୟାଗର ଅବତାର ସତେ ଚମକଇ ବିଶ୍ୱ ଯା ଦାନେ ।୪।

ପୁରାଣେର ଲେଖା ଦାମୀ କର୍ଣ୍ଣବୀର ହରିଶ୍ଚନ୍ଦ୍ର ନାମ ଯାଉଁନେ •
ଭାରତର ପୂର୍ବ-କାଳର ମହିମା ଶୁଣୁଥିଲ ଯିନା ଶ୍ରବଣେ । ୫ ।

ଏ ଯୁଗର ଦାମୀ ମୋତିଲାଲ ଧନୀ ଦେଶବନ୍ଧୁ ଦେଶ ନୟନେ
ଧନଠାରୁ ବଳି ପ୍ରାଣକୁ ଯେ ବଳି ଦେଲେ ମାତା ମୁକ୍ତି
ସାଧନେ । ୬ ।

ଯାଇଛନ୍ତି ଲଳ ଲଜପଣ୍ଡା ବୀର ସେ ବେଦନା ଅଜ ପରାଣେ
ଲଭିନାହିଁ ତାହା ଲଭି ନାହିଁ ପୁଣି ବିଷମ ବେଦନା
ସେ ସ୍ଥାନେ ।୭।

ହେମ୍ବଦ ଅଲି ହ୍ୱ.କମ ଅଜମଲ୍ଲ ଗୋପବନ୍ଧୁ ଯଣ୍ଡା ନଡନେ
ସେ ଦାରୁଣ କଥା ମନୁ ଯାଇ ନାହିଁ ଆନ ଆସି ପଶିଲା କାନେ ।୮।

ଯା ଲଗି ସେ ଦେଲେ ଜୀବନ ଯୌବନ ଧନ ମାନ ସୁଖ ସମ୍ମାନେ
ତା ଲଗି ହେବ କର ସାଧନା କାମନା ମୋ ମାତାର
କୃତୀ ସନ୍ତାନେ ।୯।

## ( ୧୩ )

ରାଗ—ଆଶାବରୀ; ତାଳ—କାହାରବା

(ଗାଅ) ସ୍ୱାଧୀନ ଭାରତ ସ୍ୱାଧୀନ ଭାରତ, ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନ ରେ
ଗାଏ ସାଗର ଭୂଧର ଅମ୍ବର ଚୁମ୍ବିତ ଭାଲ ହିମାଚଳ ଗିରିବର କମ୍ପିତ
ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନ ରେ । ଧ୍ରୁ ।

କମ୍ପେ ବିନ୍ଧ୍ୟଗିରି କାନନ କୁଞ୍ଜ
ଲମ୍ଫେ ନିର୍ଝରିଣୀ ପ୍ରପାତ ପୁଞ୍ଜ
ଚପଳା ଚମକେ ଗଗନେ ପୁଲକେ ନୀରଦ ବନ୍ଦନ ରେ । ୧ ।

ପାବନୀ ଗଙ୍ଗା ଯମୁନା ସଙ୍ଗେ
ସିନ୍ଧୁ ମହାନଦୀ କାବେରୀ ରଙ୍ଗେ
ପ୍ଲାବିତ ଭୁବନ ସୁରଧୁନୀ ଶୋଭନ ସୂଚିତ ସ୍ୱାଧୀନ ରେ । ୨ ।

ବଙ୍ଗୋପସାଗର ଉତ୍କଳ ଦେଶେ
ନର୍ତ୍ତନ କୀର୍ତ୍ତନ ଉନ୍ନତ ବେଶେ
ଅଙ୍ଗେ ରଙ୍ଗେ ତରଙ୍ଗ ଭଙ୍ଗେ ସୂଚିତ ସ୍ୱାଧୀନ ରେ । ୩ ।

ଜାତୀୟ ଚେତନ ଉଦ୍ଭବ କି ଗର୍ବ
ଅନୁକୂଳ ପର୍ବ ବିଭବ କି ଖର୍ବ
(ସେତ) ଜାତୀୟ ଗୌରବ, ଜାତୀୟ ସମ୍ପଦ, ଜାତୀୟ ଜୀବନ ରେ ।୪।

## ( ୧୪ )

# ଉତ୍କଳ ବନ୍ଦନା

ରାଗ—ଇମନ କଲ୍ୟାଣ; ତାଲ—କାହାରବା

( ଟେକନ୍ଦୁଘାଟଣା ସମ୍ମିଳନୀରେ ଗୀତ )

ହେ ମା ଉତ୍କଳ ଜନ୍ମ ମା ବନ୍ଦେ
ବନ୍ଦେ ଜନନି ଗୋ ଦ୍ୱାରବନ୍ଦେ । ଘୋଷା ।

ଗିରିବର ମଣ୍ଡିତ-କୁଟିରଶେଖରା
ତାଲ-ତମାଲ-ସୁଶୋଭିତ-ତୀରା
କଳକଳ-ନାଦ-ନିନାଦିତ-ତଟିନୀ-
—ପୂତ-ସଲିଳା ମାଗୋ ପ୍ରବାହିତ ମନ୍ଦେ । ୧ ।

ଶସ୍ୟ-ସୁଶ୍ୟାମଳ-ରଞ୍ଜିତ-ବେଶା
କୁସୁମିତ-ଉପବନ-ବିନୋଦିତ-ଦେଶା
ସୁବାସିତ-ସୌରଭ-ଆମୋଦିତ କୁଞ୍ଜା
କୂଜିତ-କୋକିଳ-ସୁଲଳିତ-ଛନ୍ଦେ । ୨ ।

ନୀଳ-ଅଚଳ-ନୀଳ-ସିନ୍ଧୁ-ତରଙ୍ଗା
ପୁଣ୍ୟକ୍ଷେତ୍ରପୀଠ-ସାଧୁ-ସୁସଙ୍ଗା
ଚାରୁ-ଶିଳ୍ପ-ରାଜ-ଅଗଣିତ-ତୀର୍ଥା
ଧର୍ମ-କର୍ମ-ବୀର-ଜନନୀ ଗୋ-ବନ୍ଦେ । ୩ ।

( ୧୫ )

କଟକରେ ଗୋପବନ୍ଧୁ ଦିବସ—୧୯୨୮

## ଉପାସନା ସଂଗୀତ

ରାଗ—ଇମନ କଲ୍ୟାଣ, ତାଳ—ଚଉତ୍ରସ

ଦୀନବନ୍ଧୁ କୃପାସିନ୍ଧୁ କରୁଣାକର
ବିଶ୍ବପିତା ବିଶ୍ବଦାତା ସତ୍ୟ ସୁନ୍ଦର । ଧ୍ରୁବ ।
ବରଷି ଆଶୀଷ-ବାରି
ଉତ୍କଳ-ଉଚ୍ଚା-ହାରି
ସଂଜୀବନୀ ସୁଧା ଦାନେ ଶକ୍ତି ସଞ୍ଚର । ୧ ।
ଧନ-ହୀନ ଜ୍ଞାନ-ହୀନ
ଧରମ-ବିବେକ-ହୀନ
ଏ ଜାତି ଅଧମ ଅତି ଉଦ୍ଧରି ଧର । ୨ ।
ଉତ୍କଳ ଯୁବକ ପ୍ରାଣେ
ଶକତି ଭକତି ଦାନେ
ବିଶ୍ବବାସୀ ସମତୁଲ କର ଏ ବର । ୩ ।
ଉତ୍କଳମଣି ମୁକତି
ମାଗୁଣି ହେ ତବ କତି
ଶ୍ରୀଚରଣେ ଶାନ୍ତି ଲଭୁ ସେ ନିରନ୍ତର । ୪ ।

( ୧୭ )

କଟକ୍‌ରେ ଗୋପବନ୍ଧୁ ଦିବସ—୧୯୨୮

## ପ୍ରାରମ୍ଭିକ ସଂଗୀତ

( ଶ୍ୟାମଣି ଖଣ୍ଡଚୂଳ — ବୃତେଓ )

କି ଦୁଃଖ ଦେଲ ସତେ ଦଇବ ଆଣି ହେ
ଏହା କେ ଥିଲ ଜାଣି
ଶୁଣିବାକୁ କି ଥିଲ ଏ ଶୋକ ବାଣୀ ହେ । ୧ ।

ଉତ୍କଳ ଗଳାହାର କଳା-ମାଣିକ
କୋଟି ସନ୍ତାନ ମେଳେ ଗୋଟି ଚୁଣିକ ହେ
ସେ ଯେ ଉତ୍କଳମଣି
ମଣିହରା କି ଏବେ ହେଲ ଜନନୀ ହେ । ୨ ।

ଜନନୀ ଗଣୁଥିଲ ହେ ଗୋପବନ୍ଧୁ
ତୁମ୍ଭ ପରି କେ ହେବ ଦରିଦ୍ରବନ୍ଧୁ ହେ
ଥିଲ ରଙ୍କ-ରତନ
ରଙ୍କ ପାଇଁ ମୁହୂର୍ତ୍ତ ଦେଇ ଜୀବନ ହେ । ୩ ।

ଝୁରୁଛନ୍ତି ଉତ୍କଳ ତରୁ ଲତାଏ
କାନନ-ଗିରି-ହ୍ରଦ ସରିତ ଯାଏ ହେ
ପଶୁ ପକ୍ଷୀ ନିକର
ଜନସମାଜେ ଶୁଣ କି ହାହାକାର ହେ । ୪ ।

ଝୁରୁଛୁ ବାଞ୍ଛାନିଧି ମନ ଅଚଳେ
ଲଭସି ଗୀତ କର୍ମ ଅନ୍ତ ଚଞ୍ଚଳ ନଦ
କାନ୍ଦେ ବକୁଳ-ବନ
ସତ୍ୟବାଦୀ ନିକୁଞ୍ଜ ପଲ୍ଲବ-ପାନ ହେ । ୫ ।

ଆସିବ ଯେବେ ପୁଣି ବନ୍ୟା ବିପତ୍ତି
କେ ଯାଇଁ ହେବ ଠିଆ ଦରିଦ୍ର କତି ହେ
ଝୁରି ଝୁରି ମରିବେ
ନିରାଶା ବେଦନାରେ ପ୍ରାଣ ହାରିବେ ସେ । ୬ ।

ସରଳ କରମଯୋଗୀ ଶାନ୍ତ ମୂରତି
ଅହିଂସା ଅବତାର ଧରମେ ମତି ହେ
ଅହେ ପଣ୍ଡିତବର
କାବ୍ୟ କବିତା ରସେ ଲେଖା ସୁନ୍ଦର ହେ । ୭ ।

ଆଜୀବନ ସ୍ୱଦେଶ ପ୍ରୀତି ବରତ
ପାଳିଲ ଏକନିଷ୍ଠ ହୋଇ ସତତ ହେ
ଅହେ ତ୍ୟାଗୀପ୍ରବର
ତ୍ୟାଗ ତୁମ୍ଭର ଦୀକ୍ଷା ମୂଳ ମନ୍ତର ହେ । ୮ ।

କେ କରିବ ତୁମ୍ଭର ସ୍ଥାନ ପୂରଣ
କାହାକୁ ଉତ୍ତରାଧି କରି ବରଣ ହେ
ଚାଲିଗଲ ସରଗେ
କି ଉପଦେଶ ଦେଇ ବନ୍ଧୁ ବରଗେ ହେ । ୯ ।

କି ସୁଖ ପାଇବ ହେ ସେ ଶାନ୍ତ ଧାମେ
ଜନ୍ମଭୂମି କ୍ରନ୍ଦନ ପଶିବ କାନେ ହେ
ତାର ଦୁଃଖ ମୋଚନ
ଲାଗି ଉତ୍କଳେ ପୁଣି ହେବ ଜନମ ହେ । ୧୦ ।

---

## ( ୧୭ )

### ବାଲେଶ୍ୱର ଜିଲା ସମ୍ମିଳନୀର ୪ର୍ଥ ଅଧିବେଶନ, ସୋର ଭଦ୍ରକ ସବ୍‌ଡିଭିଜନ ସମ୍ମିଳନୀର ୬ଷ୍ଠ ଅଧିବେଶନ, ଭଣ୍ଡାରୀ ପୋଖରୀଠାରେ ଗୀତ

ରାଗ—ଇମନ କଲ୍ୟାଣ, ତାଳ—କାହାରବା

ସୁନ୍ଦର ମା' ମୋର ଭାରତ ଜନନୀ ଗୋ
ତୋପରି ମା' ମୋର ନାହିଁ ଏ ଅବନୀ ଗୋ
ତୋ ସମ୍ପଦ ଶୋଭା ନୟନ ମନ ଲୋଭା
ତୋ ଗୁଣ କୀର୍ତ୍ତନ ଅଟନ୍ତ ଲେଖନୀ ଗୋ । ଘୋଷା ।

ତୋ ମରୁ-ପ୍ରାନ୍ତର ଭୂଧର-କନ୍ଦର
ତୋ ବନ ଉପବନ ସରିତ ସାଗର ଗୋ
ଗଗନ ନୀଳିମା ନୀରଦ ସୁଷମା
ବୃଷ୍ଟି-ଚନ୍ଦ୍ର-ତପନ-ତାରକା-ଶୋଭିନୀ ଗୋ । ୧ ।

ନିଖିଳ-ଜଗତ-ସାର ବେଦ-ବିଦ୍ୟା ଅପାର
ଶାନ୍ତି-ସୁଖ ଆଧାର ଧରମ-ତରଣୀ ଗୋ
କୀର୍ତ୍ତିକଳା-କୁଶଳା ପୁଣ୍ୟ-ତୀର୍ଥ ଲୀଳା
ଧାମ-ପ୍ରେମ-ପୂତ-ସଲିଳ-ତଟିନୀ ଗୋ । ୨ ।

ବୀର-ପରଶୁରାମ-ଧୀର-ଭୀଷ୍ମ ସମ
ହିରଣ୍ୟକଶିପୁ-ସୁତ-ଭକ୍ତ-ଜନନୀ ଗୋ
ରାମରାଜ ପରି ତ୍ୟାଗୀ ଅନୁଜ ସରି
ଦାନୀ କର୍ଣ୍ଣବୀର କୌରବ ମାନୀ ଗୋ । ୩ ।

## ( ୧୮ )

### ରାଗ-ଅଶାବରୀ; ତାଳ—ଆଡ଼ାଠେକା

ତଲେ କହେ ଭବୁନାହିଁ ଆମ୍ଭର ଦେଶର କଥା
କି ଥିଲ କି ହେଲ ଆଜି କାହା ଲଗି ପାଅ ବ୍ୟଥା ।

ଅନାହାର ବନ୍ୟା ବ୍ୟାଧି ଗଢ଼ୁଛି ଆମ୍ଭ ସମାଧି
ଯେ କରନ୍ତା ପ୍ରତିକାର ସେତ ସହାଯ୍ୟ କରନ୍ତା । ୧ ।

ଆମ୍ଭର ପୂର୍ବ ପୁରୁଷେ ବସ୍ତ୍ର ଶିଳ୍ପର ପୌରୁଷେ
ଲଭିଥିଲେ ବିଶ୍ବଖ୍ୟାତି, ଆମ୍ଭେ ନୁଆଁଇଲେ ମଥା । ୨ ।

ବୀରପଣେ ଅମ୍ଭ ଜାତି ଅରଜିଥିଲେ କୀରତି
ଆମ୍ଭେ ଆଜି କାପୁରୁଷ ଶକ୍ତିହୀନ—କାତରତା । ୩ ।

ନିଶା ପସରା ବୁଲଇ ଜୀବନ ନେଲ ମୂଲଇ
ବିଦେଶୀ ଫାନ୍ଦ ଶୋଷୁଛି ରକତକୁ ଯୋକ ଯଥା । ୪ ।

## ( ୧୯ )

ରାଗ ଭୈରବୀ, ତାଳ—ଯତ

ଜୀବନେ ଯେତେ ପୂଜା କଲନା ସାରା, ଜାନି ହେ ଜାନି
ତାଓ ହେସ୍ୱପ୍ନ ହାରା—ବୃଥେ

ସ୍ୱପନେ ଯେ ରୂପ ମା ଦେଲୁ ଦେଖାଇ
ଦେଖି ସେ ରୂପ ମନ ହେଉଛି ବାଇ
ତୋ ବିଷାଦ ମୂରତି ଦାଏ ସ୍ମୃତି କରତି
ଦେଖି ନା ପ୍ରାଣ ଅଛି କପାଁ ନ ଯାଇ । ଧ୍ରୁ ।

ଥିଲା ଧନ ଯୌବନ ଯା ପାଇଁ ଭରା
ଅନ୍ନ ବସ୍ତ୍ର ମାତର ନ ମିଳେ ପରା
ଅନାଥ ଅନାର୍ତ୍ତରେ ମନ ନ ରୁଚେ ତାରେ
ସୁନାର ଦେଶ ଛାଡ଼ି ଯାଉ ପଳାଇ । ୧ ।

ସୁଜଳା ସୁଫଳା ଶସ୍ୟ-ଶ୍ୟାମଳା,
ଭାରତମାତା ତୁ ଗୋ ନିଜେ କମଳା
କମଳା ସ୍ୱଭାବେ କି ହେଲୁ ଚପଳା ଆଜି
ଶିସ୍ୱହୀନା ହୋଇକ ପାରିବ ରହି । ୨ ।

( ୨୦ )

( ଗୋଷ୍ଠାଷ୍ଟମୀ ଉପଲକ୍ଷେ ରଚିତ )

ରାଗ-ଖମ୍ବାଜ; ତାଳ—ଏକତାଳି

ହାୟ ଗୋ ଗୋମାତା ତୋ ଭାଗ୍ୟ ବିଧାତା
ଲେଖିଥିଲା ଏତେ ଯାତନା
କୋଟି ଦେବଦେବୀ ଜନ୍ମ କୂପ ଯାର ସମ୍ଭବ କି ସେ ଏ ଲାଞ୍ଛନା

ବିଶ୍ୱପତି ଯାର ଲାଗି ଅବତାର
କୈଶୋରେ କଲେ ଗୋଚାରଣ ସାର
ନେ ଧନ ବିରାଟ ନୃପତି ସମ୍ବଳ (ସେ) ତୁଚ୍ଛ କିଁପା ଆଜି ହେଲା ମା ।

ହିନ୍ଦୁ ତୋର ସେବା ପବିତ୍ର ବ୍ରତ
ପାଳନେ ଜନମ ହୁଅଇ କୃତାର୍ଥ
ଆଜି ତୋର ସେବା ଘୃଣ୍ୟ ନୀଚ ଅବା
ତୋ ବିଧେ ନାହିଁ ଗୋ ଶୋଚନା । ୨ ।

ମହାଉପକାରୀ ଯେ ପ୍ରାଣୀ ଜଗତେ
ସେ ପ୍ରାଣ ବିନାଶେ ବିନାଶ ଭାରତେ
ସେ ଜାତି ପତନ ଖରଶ୍ୱାସ ବାଣ
ଦେଉଛୁ ଦେଶକୁ ବେଦନା । ୩ ।

( ୭୧ )

ଗଜଲ ତାଳ—କବାଲି

( ମୁଁ ବୀଣା ମେ ତାର ଭର୍ଦୁଁର, ମୁଁ ସୁର ମେ ସୁର ଝଂକାର—ବୃତ୍ତେ )

ଆସ ହେ ଆସ ହେ ଭାଇ ଦେଶର ଆଶା ଭରସା
ମୋ ଦେଶ ଆଶା ଭରସା ଜନନୀ ହୃଦ ସରସା । ଘୋଷା ।

ଆଶା ଗଗନର ତାରା
ଜନନୀ ଦୁଃଖ ପାସୋରା
ସୁଖର ଲେଝଣୀ ପାରା ଚୋଷ । ତା ହୃଦୟେ ବସା । ୧ ।

ତୁମ୍ଭ ଲଗି ସେହୁ ବୀର
ବନ୍ଧୁନେ ହେବ ଅଧୀର
ବୀରର କରମ କର ଘୁଞ୍ଚାଅ ତା ଦୁଃଖ ଦଶା । ୨ ।

ଯୁଗେ ଯୁଗେ ଦେଶେ ଦେଶେ
ଯୁବକ ସେନାଙ୍କ ବେଶେ
ତାରିଲେ ଜନମ ଭୂଇଁ ଇତିହାସର ଏ ଘୋଷା । ୩ ।

ଜଗତ ଜାଗିଛି ଯେବେ
ଶୋଇଛ କିପାଇଁ ତେବେ
ତୁମ୍ଭେ କି ଜଗତ ଛଡ଼ା ? ହେବ କି ଜଗତ ହସା । ୪ ।

( ୨୨ )

କଟକ ଜିଲ୍ଲା ସମ୍ମିଳନୀ—କେନ୍ଦ୍ରାପଡ଼ା

୧୯୨୮

## ଅଭ୍ୟର୍ଥନା ସଂଗୀତ

ରାଗ—କାଫି ସିନ୍ଧୁ  ତାଳ—ଏକତାଳି

ଆସ ହେ ପ୍ରିୟ ସୁନ୍ଦର ହୃଦ ଦେଶ ନାୟକ ହେ
ଆସ ଆସ ରାଜ-ତନୟ ଦେଶ-ସେବକ ହେ । ଘୋଷା ।

ଜୀବନ ଧନ ସମ୍ଭୋଗ ସୁଖ ପରିହରି ଅଛ ହରି
ନୋହୁଛ ବିମୁଖ ହେ
ସଁପିଛ ଜୀବନ ଜନନୀ ଚରଣେ ତ୍ୟାଗୀ ଯୁବକ ହେ,
ଅରଜୁଛ ଖ୍ୟାତ ପୁଣ୍ୟ-ଭାରତ ଜ୍ଞାନ ବର୍ଦ୍ଧକ ହେ । ୧ ।

ଜନ୍ମଭୂମି ଦୁରିତ ଲାଗି କେତେ ଯାତନା ଭୋଗି ? ନୋହୁଛ ଅଧୀର ହେ
ସାଧୁଛ ସାଧନା ଲଭିଇବ ବୋଲି ଦୁଃଖ ପାଇବ ହେ,
କରିଅଛ ପଣ ଦେବାକୁ ପରାଣ ଧରିବ ଶାୟକ ହେ । ୨ ।

( ୨୩ )

ଗଜଲ, ତାଳ— କାହାରବା ଓ ଖେମଟା

ଗାଅହେ --ବନ୍ଦେ ଜନମୀ ବନ୍ଦେ ଜନମୀ ଜନମୀ ଜୟ ଜୟ ହେ

ଗମ୍ଭୀର ଗୁରୁ-ନାଦ ସଂଗୀତ ଗାନେ
ସୁଲଳିତ ଝଙ୍କାର ସୁନ୍ଦର ତାନେ

ଜମ୍ବୁ ହିମାଚଳ ଆକାଶ ବିତାନେ ଉତ୍କଳ ଭୂମୟ ହେ ।

ଗାଏ ମଳୟାନିଳ ଗାଏ କୁଞ୍ଜେ କୋକିଳ
ଗାଏ ସରିତ ବନ ପର୍ବତ ସାଗର ଜୟ ।

---

( ୨୪ )

ଗଜଲ; ତାଳ—ଢାଦ୍‌ରବା

ଆଜକାଲ, କମିଶନ ଫମିଶନ କେତେ ଯେ କମିଟିମାନ
ନିତ ନିତ ବସିଯାଉଛି
ସତେକ ସେ ସୁରବର ଏଥର ଅମର ବର
ଯାଚଦେବେ ଜଣା ଯାଉଛି
ବର ତ ମିଳୁଛି ଯାହା ମନତ ଜାଣିଛି ତାହା
ଭଣ୍ଡାମିରେ ମନ ଆଜ ସତେ ଭୁଲୁଛି ; ଧ୍ରୁ ।
ଦେଖି ନ ଦେଖିବ ଯେହୁ ଠକ ନ ଶିଖିବ ଯେହୁ
ତାକୁ କହିବାକୁ କାହା ଯୁଗ ଯାଉଛି । ୧ ।

ଏ ଦେଶରେ କେତେଥର ବସିଛି ନାନାପ୍ରକାର
କମିଟି ସବ୍-କମିଟି ମନେ କି ଅଛି
ନାମରେ ଧବ୍-କମିଟି କାମରେ ଶବ କମିଟି
ଫଳ ଭଲେ ଯାହା ତାହା ଜଣାଯାଇଛି । ୨ ।

ମଣ୍ଟେଗୁ-ଚେମିସ୍ ଫୋର୍ଡ଼ ଶାସନ ସଂସ୍କାର ବୋର୍ଡ଼
ବସି କେତେ ଅଧିକାର ଦେଇ ଯାଇଛି
କପଟ୍ ସେ ଅଧିକାର ପଞ୍ଚାବର ଅତ୍ୟାଚାର
ବଙ୍ଗର ନୂଆ ଆଇନ କହି ଦେଉଛି । ୩ ।
ବସିଥିଲା ମୁଡ଼ିମ୍ୟାନ ନାମରେ କମିଟି ଆନ
ଦେଟସୋରି ସେଥି ସହଯୋଗ କରୁଛି

ଗିରି ପ୍ରସବ ବେଦନା ଫଳ ଶେଷେ ହେଲା ସିନା
କାଲିକାର କଥା ମେକଂ ମନୁଁ ଯାଉଛି । ୪ ।

ଲି—କମିଶନ ବୋଲି ଦେଶରେ ପଡ଼ିଲା ହୁରି
ଖରଚ କମାଇବାର ବାଟ କାଢୁଛି
(ଟେକେଷେ) ସିଭିଲିଆନ ଗୋସାଇଁ ଅଧିକା ବେତନ ପାଇଁ
ସୁପାରିସ କରିଗଲେ ମୋ ମନେ ଅଛି । ୫ ।

ଦେଶ ମିଶ୍ରଣ ବାରତା ଫିଲପ୍‌ଡ଼ଫ୍ କରତା
କହିଗଲେ ସେ କଥାବି ମନରେ ଅଛି
ଅଫିମ ତଦନ୍ତ ପୁଣି ବନ୍ୟା ବିଚାରଦ ଜାଣି
କରିଦେବେ ଯାହା ଆଗେ ଜଣାଯାଉଛି । ୬ ।

ଆସିଥିଲା ସାଇମନ ଦେବାକୁ ନୂଆ ଶାସନ
ଅଧିକାର ବଡ଼ ବୋଲି ବୁଝା ଯାଇଛି ।
କପଟି ସେ ଅଧିକାର ଆଗରୁ ଛାଡ଼ା ପ୍ରଭୁର
ମନ୍ତ୍ରୀଙ୍କର କଳଙ୍କରୁ କରି ଦେଉଛି । ୭ ।

---

( ୨୪ )

## ଉତ୍କଳ ସମ୍ମିଳନୀର ଷଷ୍ଠ ପ୍ରବର୍ତ୍ତନାରେ ଗୀତ

ରାଗ—ବେନ୍-ବେଲ୍; ତାଳ—ଝପ

ଆମ୍ଭର ଦୁଃଖ ଗୁଣି ଗୁଣି ନିରତେ ମୋହନ ଝୁରୁଛୁ ରେ ।
ବୁଝାଇ ବୁଝାଇ ବୁଦ୍ଧିକୁ ହଜାଇ ଦେଲ ତେବେ କ ନ ପାରୁଛୁ ରେ ।
ବରଜ ମାଳାଚଳରେ ଥରେ
ଗଲେ ଯେ ଛବି ଦେଖି ଆଖିରେ
ଦଣ୍ଡ ଦଣ୍ଡ ମନେ ପଡ଼ୁଛି ସେ ଛବି ନୟନୁ ଲୋତକ ଝରୁଛୁ ରେ ।୧।

ଆମ୍ଭର ଦୁଃଖ ଫେଡ଼ିବା ପାଇଁ
ଖଣ୍ଡ ବେଶର ଦେଲେ ଚଳାଇ
ଆମ୍ଭେ ନ ବୁଝୁଁ ଆମ୍ଭ ଦୁଃଖ କଥା ଆମ୍ଭ ପାଇଁ ଆନ ମରୁଛୁ ରେ ।୨
ଶିକ୍ଷିବ ଖଦ୍ଦର ହେବ ଦୁଃଖ ଦୂର
ଉଇଏ ପାଇବ ଆହାର
ଉଦାସୀ ହୋଇବୁ ନ ରହ ଏଣିକି ଏତିକି ଅଳି ମୁଁ କରୁଛୁ ରେ ।୩।

( ୨୭ )

ରାଗ—ଅଶାବରୀ, ତାଳ – କବାଲି

( ମନ ମଜିଲ ସଖୀରେ—ବୃତ୍ତେ )

ଜାଗିବ ନାହିଁ ହୃଦେ କ, ଦେଶ ପୀରତ । ଧ୍ରୁବ ।

ଜାଗିଛି ଜଗତ ସାରା ଜାଗିଛି ଭାରତ ପରା
ଗଗନ ପବନ ପ୍ରାଣ ଚଞ୍ଚଳ ଅତି । ୧ ।

ମହାତ୍ମା ମୋହନ ଗାନ୍ଧୀ ଅଛି କାରାଗାରେ ବନ୍ଦୀ
ସେତ ଜଗତ ନୟନ ଦେବ ମୂରତି । ୨ ।

ଦେଶ ଲଗି କେତେ ଜନ ଧନ ଜୀବନ ଯୌବନ
ବରଜି ଅରଜିଲେ ଅକ୍ଷୟ କୀରତି । ୩ ।

ଯେ ଦିନ ଜାଗିବ ଥରେ ଦେଶ ପୀରତି ପ୍ରାଣରେ
ସେ ଦିନ ମୁକତ ତବ ସ୍ୱରଗ ଗତି । ୪ ।

( ୨୭ )

ରାଗ—ମିଶ୍ର, ତାଳ—ଝଞ୍ଜ, ଝାମ୍ପତାଲ

( ସାରସାରସଜୟନା ମଲ୍ଲିକ—ବୃତ୍ତେ )

ସ୍ୱଦେଶୀ ବସନେ ଭାଇ ମଲ୍ଲିକ
ଚକ୍‌କଣ ସରୁ ସୁରଙ୍ଗେ ନାନା ଛବି ନାନାରଙ୍ଗେ ଭୁଲିଲୁକ । ଧ୍ରୁବ ।

ଏ ଦେଶ ସ୍ୱାନ୍ତ କାରିଗର, କଳଙ୍କ ପାରିବ ତା ସରି
ଛୁଞ୍ଚା ଭବନା ରାଇଜେ ସ୍ୱଜିଲୁକି । ୧ ।

ଦେଶ ଗରିବ ହେଲ ନ ଖାଇ ମରୁଥାଇ
ତାର ଏକା ପ୍ରତିକାର ଦେଶୀ ବସନ ବେଭାର, ହେଜିଲୁକ । ୨ ।

---

( ୨୮ )

ରାଗ— ସିନ୍ଧୁ, ତାଳ—କାହାରବା

( ଯାତେ ହେଁ ତେରୀ ପ୍ୟାରେ କୁଞ୍ଜମେ--ବୃତେ )

ଆସିବ ଆସୁଛି ଆସିଛି ସମୟ
ଭାରତ ଗଗନେ ଭାଗ୍ୟ ରବି ଉଦୟ । ଧ୍ରୁବ ।

ସ୍ୱାଧୀନତା ଲାଗି କେତେ ତ୍ୟାଗୀ ବୀର
ଭୋଗିଲେଣି କାରା ହଜାର ହଜାର
ମୁଣ୍ଡୁଛି ଧନ ପ୍ରାଣ ଜୀବନ ଯଉବନ
ଅହିଂସା ମନ୍ତ୍ରରେ ଅଜେୟ ଅଭୟ । ୧ ।

ଉତ୍କଳର ସୁତେ ହୁଅ ହେ ଜାଗ୍ରତ
ଜନନୀର ଋଣୁ ହୁଅ ହେ ମୁକତ
କରମ କରିବ ମୁକତି ପାଇବ
ସ୍ୱାଧୀନତା ଧ୍ୱଜା ଉଡ଼ିବ ନିଶ୍ଚୟ । ୨ ।

( ୨୯ )

ରାଗ—ଖମ୍ମାଜ, ତାଳ—ଅଡ଼ାଠେକା

ଜାଗିବ ନାହିଁକି ଏବେ ଉତ୍କଳ ରମଣୀ ହେ
ଲଭିବ ନାହିଁକି ହୃଦେ ଦେଶ ଦୁଃଖ ଶୁଣି ହେ । ଧ୍ରୁବ ।

ପୁରାଣେ ସୀତା ସାବିତ୍ରୀ ଅହଲ୍ୟା ଦ୍ରୌପଦୀ କୁନ୍ତୀ
ତାରା ଦୁର୍ଗାବତୀ ବୀର ମନ୍ଦୋଦରୀ ରାଣୀ ହେ । ୧ ।

ତାଙ୍କର ରକତ ପରା ବହୁଛି ତୁମ୍ଭର ଶିରା
ଶୀତଳ କପାଇଁ ତାହା ଶିଥିଳ ଧମନୀରେ । ୨ ।

ଦେଖ ହେ ନାରୀ ଜଗତେ, ଦେଖ ହେ ନାରୀ ଭରତେ
ମାତିଲେଣି ମନ-ପ୍ରାଣେ ସବ୍ରେଜନମୀ ଧମୀ ହେ । ୩ ।

( ୩୦ )

ରାଗ - ଝିଝିଟ, ତାଳ—କବାଲି

ଉଡ଼ ଖେଳରେ ଜାତି-ପତାକା ଆଜି
ଶୁଭ-ବେଳରେ ତୋର ସ୍ୱରୂପ ସାଜି । ଧ୍ରୁବ ।

ଉଡ଼ ପବନେ ବୁଲି ସୁମନ ମନେ
ଦେଶ ମାନ ଜାରତି ଗରବ ଗାନେ
ଜାତୀୟ-ଗୌରବ-ସ୍ୱାଧୀନ-ସୌରଭ
ପାଲଟେ ସମୀରଣ ତୋ ଅଙ୍ଗେ ବାଜି । ୧ ।

କେଡ଼େ ସୁନ୍ଦର ତୋର ମୂରତି ଆଜ
କେଡ଼େ ମଧୁର ତୋର ସ୍ୱାଧୀନ ଶୋଭା
ସ୍ୱାଧୀନ ସ୍ୱାଧୀନ ସଂଗୀତ ଗାଉଛୁ ତୁ
ଫର ଫର ଉଡ଼ୁ ନୀଳ-ଗଗନେ ରାଜି । ୨ ।

ତିନ ରଙ୍ଗରେ ତୋର ବରଣ ସାଜେ
ତହିଁ ସଙ୍ଗରେ ଶୁଭ୍ର ଚରଖା ରାଜେ
ଜାତୀୟ-ଏକତା-ପୀରତି-ମୂରତି
ନବ ଯୁଗେ ନବ ତେଜେ ଉଠ ବିରାଜି । ୩ ।

( ୩୧ )

ରାଗ—ମିଶ୍ର, ତାଳ—କାହାରବା

( ମାଲ ନଳିନ ଅଖି ହେତା ଲଗି ପଙ୍କଜମୁଖୀ—ବୃତ୍ତେ )

ଭାଇ ମୁଁ ଧରୁଛି କର, ମୋ କଥା ମନରେ ଧର
ବାର ବାର କରି କହୁଛି ଦସ୍ତିନା ପିନ୍ଧ ଖଦର । ଧ୍ରୁବ ।

ଦେଶେ ଦେଶେ ବିଦେଶେ ଏ ବାଣିଜ୍ୟ କରି ପ୍ରଚୁର
ଜାତିର ଲୁପ୍ତ ଶିଳପ ହେଲା ଉଦ୍ଧାର
ଏହା ଲଗି ଭବ ଭାବ, ଅନୁରାଗୀ କେତେ ତ୍ୟାଗୀ
ବେଗି କାରାଗାର ନାନା ଦୁଃଖ ଅପାର କଲେ ଜୀବନ ସାର । ୧ ।

ହାରି ତୁ ମଣି ହାର କରିଲୁ ବିଦେଶୀ ମାତ
ଜାଗିବ ନାହିଁ କି ପ୍ରାଣେ ଦେଶ ପୀରତ
ଆନ ଦେଶେ ବିଦେଶୀର ନାହିଁ ଏଭଳି ଆଦର
ହେଉ ଯେତେ କଦାକାର ସ୍ୱଦେଶୀ ତ ସୁନ୍ଦର
କରିବେ ଆଦର କିଣିବେ ହେଉ ଯା' ଦର । ୨ ।

( ୩୨ )

ରାଗ—ଅଶାବରୀ, ତାଳ—ଏକତାଲ

[ କୁଞ୍ଜେ ବାଜୁଛି ମୁରଲୀ—ବୃତେ ]

ଏବେ ଜାଗିବ ନାହିଁକି ?
ଉତ୍କଳ ଲଳନା ସତୀ ବୀରାଙ୍ଗନା ଜାଗରେ ଜାଗରେ ଜାଗରେ
ନୀରବେ ରହ କାହିଁକି ? । ଧ୍ରୁବ ।

ଦେଖିବ ନାହିଁକି ନୟନ ନିରେଖି
ଜନମ ଭୂମିର ବେଦନା ପରଖି
ଜପିବ ନାହିଁକି ଶୟନେ ସ୍ୱପନେ ଜନନୀ ମୁକତି ପାଇଁକି ?

( ୩୩ )

## ଖଦ୍ଦ ସଙ୍ଗୀତ

ରାଗ—ପିଲୁବାରୁଆଁ ; ତାଳ—ଖେମଟା

କି ସୁଖ ପାଉଛ ପିନ୍ଧି ଏ ବିଦେଶୀ ବସନ
ଏସ୍ୱା କରି ଭାଇ ଦେଶ ସର୍ବ ହୁଏ ଉଚ୍ଛନ୍ନ । ଧ୍ରୁ ।

ସସ୍ତା ମଲ ମଲ ଲୁଗା କିଣୁଛ ଆଦରେ
ନବୁଝୁଛ ଭାଇ ପଡ଼ିଯାଉଅଛ ବେପାରୀ ଫାନ୍ଦରେ
ଥରେ ଭୁଲିଲେ କୁହୁକେ ମଜି ରହିବ ମନ । ୧ ।

କୋଟି କୋଟି ଟଙ୍କା ଲୁଟି ନେଉଛନ୍ତି ବିଦେଶୀ
ଆମ୍ଭ ପଇସାରେ ଆମ୍ଭର ମାଂସ ଦେଉଛନ୍ତି ଚହ୍ନେ ପେଷି
ଭାଇ ନ ବୁଝିଲେ ଦୁଃଖ କେବେହେଁ ହେବ କି ମୋଚନ । ୨ ।

କେଡ଼େ ସୁନ୍ଦର ଖଦର ହେଲାଣିରେ ଭାଇ
ଦେଶ ଗରିବ ଭାଇଙ୍କ ହାତକଟା ସୂତା ଦେଶରେ ବୁଣାଇ
ଦେଖିବେ ରଙ୍ଗ ଢଙ୍ଗ ଛାପାଦିଆ ନାନା ଫେସନ । ୩ ।

( ୩୪ )

ରାଗ—ପିଲୁବାରୁଆଁ, ତାଳ-ଝପ

( ଶ୍ୟାମ ଅପବାଦ ମୋତେ ହେଲେ ହେଉ—ବୃତ୍ତେ )

ଖଦ ପିନ୍ଧିବି ମୁଁ ସେ ଯେତେ ମୋଟ ହେଉ ।
ହସିବ ଦେଖି ଯେ ମୋତେ ହସୁଥାଉ ( ସେ ପଛେ ) । ଧ୍ରୁ ।

ମୋ ଦେଶ ଛଅଣ ଧନ
କରିବି ଅଛ ଯତନ
ଆଦରେ କଣିବି ଦର ଯେତେ ହେଉ ( ଛା ଦର ) ୧ ।

ଯା ଲାଗି ଶହେ ହଜାର
ଭୋଗିଲେ ହେ କାରାଗାର
ଋଷିଗଣ ଦେଶହୋଶ ତ୍ୟାଗ ଭୋଜ । (ରେ ଭାଇ) । ୨ ।

ନ ଖାଇ ଭାଇ ମରୁଛୁ
( ମୁଁ ) ବିଳାସେ ଧନ ସାରୁଛୁ
ବାବୁ ପଣିଆ ଚୁଲିକି ଦେଣେ ଯାଉ (ଚୁଲିକି) । ୩ ।

( ୩୫ )

ରାଗ – କେଦାର; ତାଳ – ଝମ୍ପ

( ଗୋପବନ୍ଧୁ ଶ୍ରାଦ୍ଧ ଦିବସ ଉପଲକ୍ଷେ )

୧୯୩୧

ଲୁଚିଛ କି କେଉଁ ଅଜଣା ରାଇଜେ ପରାଣ ଦେବତା ହେ
ଚାହିଁଛ କି ରହି ଆଖି ଅନ୍ତରାଳେ କାତର କରୁଣା ହେ । ଧ୍ରୁ ।

ହସି ହସି ଥରେ ଦୂର ଗଗନରେ
ଏ କାତର ଗତି ଦେଖ ନୟନରେ
ବସି ବସି ଆଶୀ-ପସରା ଅଜାଡ଼ି ଦେଉଛ କି ଦାତା ହେ । ୧ ।

ତାମସୀ ରଜନୀ ବରଷି ଅଞ୍ଜନ
ଅକୂଳ ସାଗରେ ଭାସିଲେ ତରଣୀ
ସୁନାବିକ ପରି ସୁକାନକୁ ଧରି ଚଳାଅ ନିଅନ୍ତା ହେ । ୨ ।

ତୁମ୍ଭର ସାଧନା ତୁମ୍ଭର ଯାତନା
ଆଣିଦିଏ ପ୍ରାଣେ ଆଶା ଆଶ୍ୱାସନା
ତୁମ୍ଭର ଧରମ ତୁମ୍ଭର କରମ ରହିଛନ୍ତି ଜୀଅନ୍ତା ହେ । ୩ ।

( ୩୭ )

ରାଗ – ଦେଶ୍ – ତାଳ – ଝେମ୍ପୁରା ।

ଜାଗ ଜାଗ ହେ ଜାଗ ଉତ୍କଳ ବୀରଶୂର ସନ୍ତାନ ହେ
ଆସେ ଅମ୍ବର ଭେଦ ତୁମ୍ବୁର କୀର୍ତ୍ତି ଝଙ୍କାର ତାନ ହେ । ଧ୍ରୁ ।

ଅତୀତ ଭାରତ କାଳ ଅଙ୍ଗରେ
ରଜେ ଝଲମଲ ଜ୍ୟୋତି ସଙ୍ଗରେ
ସ୍ପୁର୍ତ୍ତ ଗୌରବ ଶିଳ୍ପରେଖାର ମହିମା ଖୋଦିତ ସ୍ୱର୍ଣ୍ଣରଙ୍ଗରେ ।

ଉଜ୍ଜ୍ୱଳ ବିଶ୍ୱ ସେ ରେଖା ଝଲକରେ
ନାଚି ଉଠୁ ଭାବ ପୁଲକରେ
ପ୍ରାଣପରଶୀ ସେ ଅମର ଆଲୋକ ଜ୍ଞାନ ପ୍ରକାଶୁ ସେ ଭୂଲୋକରେ ।

ଅତୀତ ଭାରତ ଗୌରବ ଗାନ
ଉତ୍କଳ ଦେଶର ଶିଳ୍ପର ମାନ
ଉଠାଅ ମୂର୍ଚ୍ଛନା ଭାବସ୍ପନ୍ଦନ ପରଶୁ ଜାତି ପରାଣ ହେ
ମାତି ଉଠ ଚିର ସୁପ୍ତ ନିଦ୍ରିତ ଜାଗିଉଠୁ ହୃଦ ଧ୍ୟାନ ହେ

( ୬୭ )

ରାଗ—ଭୈରବୀ, ତାଳ—କବାଲୀ

( କନକ-ବରଣୀ ତାରକା ଗଗନେ
କାହା ଲାଗି ମଜନେ ବସିଛୁ—ବୃନ୍ଦେ )

( ବସି ) ଅମର ଭବନେ ସମାନ ଆସନେ ସ୍ୱରଗପୁରରୁ ଚାହିଁଛି
ଉତ୍କଳ ଭୁବନେ ଭବନେ ଭବନେ ଯାର ନାମ ଜପାମାଳ ହୋଇଛି
ଯା ଯଶ ଭାରତ ସ୍ୱଦେଶ ପୀରତ ଗଗନେ ପବନେ
ମିଶି ଧାଉଁଛି । ଧ୍ରୁବ ।

ଦରିଦ୍ର ହୃଦୟ ଧନ ଅନାଥର ବନ୍ଧୁ
ଉତ୍କଳ ପରାଣ ମଣି ସେହି ଗୋପବନ୍ଧୁ
ଯା ପାଇଁ ଅଧୀର ପ୍ରାଣ ହୃଦୟ ତ କାତର
ନୟନୁ ବହଇ ନୀର ସୁମରିବା ମାତର

ସେ ମୁଖ ସେ ହାସ ସେ ମଧୁର ଭାଷ
ମାନସ-ପଟେ କି ଲେଖି ଯାଇଛି । ୧ ।

ଚାହିଁଛି ସେ ସ୍ୱରଗରୁ ଏ ଦେଶକୁ ଅନାଇ
କହିଥିଲା ହୃଦୟର କେତେ କଥା ମନାଇ

କରିଛକି ସାରିଛକି କରତବ୍ୟ ଯାହାକ
ଜନନୀ ମୁକତ ଦେଶ ସ୍ୱାଧୀନତା ପାଇଁକ
ବୀର ଆରାଧନା ସ୍ୱରାଜ୍ୟ ସାଧନା
ପରମ ପୂଜା ପରା ସେ କହିଛି । ୨ ।

ଜାଗିବକି ପ୍ରାଣେ ପ୍ରାଣେ ସେହି ବନ୍ଦୀ ବାରତା
କାରାଗାରୁଁ କହିଥିଲେ ଯାହା ବାଣୀ ବାରତା

"ପଞ୍ଚଧୂଆଁ ନାହିଁ ବୀରର ଜାତରେ
ନ ମରେ ସେ କେଉଁ ପରାଣ ଆତଙ୍କେ"

କାପୁରୁଷ ପଣ ମରଣ ସମାନ
ବୀରର ସେ ଗାନ ସଦା ଗାଉଛନ୍ତି । ୬ ।

( ୩୮ )

( ନିଖିଳ ଉତ୍କଳ ସମାଜ ସଂସ୍କାର ସମ୍ମିଳନୀ ଉପଲକ୍ଷେ ରଚିତ )

ରାଗ—ଗଜଲ୍, ତାଳ—କବାଲି

କି ହେଲା କି ହେଲା ଭାଇ ଆମ୍ଭର ଦେଶ ସମାଜ
ମରମେ ଲାଗେ ବେଦନା ସରମେ ମରୁଛି ମୁଁ ଆଜ । ଧ୍ରୁବ

ଧରମ ନାମେ କେ କେତେ ଆଚରି ପାପ ଗୁପତେ
ପରକୁ ପାପୀ ବନାଇ ବୋଲାଏ ଧରମ-ରାଜ । ୧ ।

ବାଳକ କୋମଳ ମତି ନ ଜାଣେ ପୀରତି ରୀତି
ବାଳିକା ଶିଶୁ ସଙ୍ଗତେ ସଜାଏ ବିବାହ ସାଜ । ୨ ।

କଟୋରି ଯୁବର ପ୍ରୀତି, ଜଗି ଜାତିର ଏ ରୀତି
ପଣ୍ଡିତ ପରି ପୂଜଣେ ଦ୍ୱିଜ ସେ ସମାଜ ରାଜ । ୩ ।

କେତେ ଯେ ବିଧବା ନାରୀ କେତେ ଯେ ଗରଭଧାରୀ
ମରନ୍ତି ମାରନ୍ତି ଶିଶୁ ସମାଜ ଭୟେ କି ବା ଲାଜ । ୪ ।

ଯୁବତୀ ବିଧବା ପ୍ରାଣ କି ଦୁଃଖ ଭୋଗେ କି ଜାଣ ?
ଭାବିବ ଯେବେ ତାହାକୁ ସମାଜ ନୀତିକୁ ମାଜ । ୫ ।

ବେପାରୀ ହୋଇ ଜନକ ବିକୁଛି କନ୍ୟା କନକ
କିଣୁଛି କାହିଁ ଜାମାତା ବଜାଇ ନିଲାମ ବାଜ । ୬ ।

